# ଆପଣଙ୍କ ସ୍ୱାସ୍ଥ୍ୟ



ଡକ୍ଟର ନିରଞ୍ଜନ ତ୍ରିପାଠୀ, ଏମ୍.ଡି.

# ଆପଣଙ୍କ ସ୍ୱାସ୍ଥ୍ୟ

( ପ୍ରଥମ ଭାଗ )

ଡକ୍ଟର ନିରଞ୍ଜନ ତ୍ରିପାଠୀ,
ଏମ୍. ବି. ବି. ଏସ୍., ଏମ୍. ଡି., (ଉତ୍କଳ)
ଏଫ୍. ସି. ସି. ପି. (ଆମେରିକା)
ଏଫ୍. ଆଇ. ସି. ଏ. (ଆମେରିକା)



**ଆପଣଙ୍କ ସ୍ୱାସ୍ଥ୍ୟ** (ପ୍ରଥମ ଭାଗ) ଲେଖକ : **ଡକ୍ଟର ନିରଞ୍ଜନ ତ୍ରିପାଠୀ**, ଏମ୍. ଡି., ପ୍ରକାଶକ : **ଫ୍ରେଣ୍ଡସ୍ ପବ୍ଲିଶର୍ସ,** ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଚ୍ଛଦପଟ : ହରେକୃଷ୍ଣ ରାଉତ, ପ୍ରଥମ ସଂସ୍କରଣ ୧୯୮୬, ତୃତୀୟ ସଂସ୍କରଣ : ୧୯୯୫, ମୁଦ୍ରଣ **ମା' ସନ୍ତୋଷୀ ପ୍ରେସ୍**, କଟକ-୭୫୩୦୦୧



**APANANKA SWASTHYA** Part-(1) Author : **Dr. Niranjan Tripathy**, M D , Publisher : **Friends' Publishers**, Binodbehari, Cuttack-753002, Orissa, (India), Cover design : Sri Harekrushna Rout, First Edition 1986, 3rd Edition : 1995, Printers : **Maa Santoshi Press**, Cuttack-1.
Price **20-00**

## ଉତ୍ସର୍ଗ

'ପୌରୁଷ'ର ସମ୍ପାଦିକା ଶ୍ରୀମତୀ **ଜୟନ୍ତୀ ପଟ୍ଟନାୟକ**

ଓ ପ୍ରତିଷ୍ଠାତା ସମ୍ପାଦକ

ଶ୍ରୀଯୁକ୍ତ **ଜାନକୀବଲ୍ଲଭ ପଟ୍ଟନାୟକଙ୍କ**

କର କମଳରେ ପରମ ସ୍ନେହ ଓ ଶ୍ରଦ୍ଧା ସହ

**—ଲେଖକ**

# ସୂଚୀପତ୍ର

# ସ୍ୱାସ୍ଥ୍ୟ ସେବା : ଆଗାମୀ ଯୁଗର

ଜାତିସଂଘର ବିଶେଷଜ୍ଞମାନେ କହନ୍ତି—୨୦୨୫ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ୮୨୦ କୋଟି ହୋଇଥିବ ଏବଂ ୨୦୫୦ ମସିହା ବେଳକୁ ଏହା ବଢ଼ି ୧୦୦୦ କୋଟି ହୋଇଯିବ । ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ୪୨୦ କୋଟି । ୨୦୫୦ ମସିହା ବେଳକୁ ୮୦ ବର୍ଷରୁ ୧୨୦ ବର୍ଷ ପର୍ଯ୍ୟନ୍ତ ବଞ୍ଚିବା ଏକ ସାଧାରଣ ଘଟଣା ହେବ । ତେଣୁ ଆମର ଯେଉଁ ପିଲାଝିଅମାନେ ଏବେ ୧୦।୧୫ ବର୍ଷର ହୋଇ ସ୍କୁଲରେ ପଢ଼ୁଛନ୍ତି, ସେତେବେଳେ ସେମାନଙ୍କୁ ପ୍ରାୟ ୮୦ ବର୍ଷ ୯୦ ବର୍ଷ ହୋଇଥିବ । ତେଣୁ ତାଙ୍କର ଲୁଣାଅଧିକେ ପିଲାଦିନ କଥାସବୁ ମନେପଡ଼ିବ । ୭୦ ବର୍ଷ ଏବେ ଟିକିଏ ଲମ୍ବା ଉମର ଜଣାପଡ଼ୁପାରେ, କିନ୍ତୁ ଇତିହାସ ପାଇଁ ଏହା ଆଖି ପିଛୁଳାକେ କଟିଯିବ ।

ଏଇ ୩୦।୪୦ ବର୍ଷ ତଳେ ହଜାର ହଜାର ପିଲା, ମା' ପେଟରୁ ଜନ୍ମ ନ ହୋଇପାରି ଉଭୟ ମା' ଓ ଛୁଆ ମରିଯାଉଥିଲେ । ପୁଣି ଜନ୍ମ ହେଲାପରେ ଝାଡ଼ା, ଜ୍ୱର, ମିଳିମିଳା, ହାଡ଼ଫୁଟି, ଯକ୍ଷ୍ମାରେ ଲକ୍ଷ ଲକ୍ଷ ପିଲା ମରିଯାଉଥିଲେ । ଏବେ ସେସବୁ ଆସ୍ତେ ଆସ୍ତେ ସମ୍ପୂର୍ଣ୍ଣ ରୂପେ ଆୟତ୍ତ କରିଯାଇ ପାରିଲାଣି । ଜନ୍ମ ହେଲା ପରେ ମାସେ ବଞ୍ଚିଗଲେ ସବୁପିଲା ପ୍ରାୟ କୌଣସି ଦୁର୍ଘଟଣା ନ ଘଟିଲେ ବଡ଼ ମଣିଷ ହେଲା ପର୍ଯ୍ୟନ୍ତ ବଞ୍ଚିଯିବେ । କାରଣ ଝାଡ଼ା, ଜ୍ୱର, ଯକ୍ଷ୍ମା, ପୋଲିଓ, ବସନ୍ତ, ହଇଜା ପ୍ରଭୃତି ସାଧାରଣ ସଂକ୍ରାମକ ରୋଗଗୁଡ଼ିକର କାରଣ ପୂରା ଜଣାପଡ଼ିଗଲାଣି ଏବଂ ଔଷଧ ଖାଇଲେ ଏହା ପୂରାପୂରି ଭଲ ହୋଇଯାଉଛି । ୨୦୫୦ ମସିହା ବେଳକୁ ଯେଉଁ ପିଲାମାନେ ଡାକ୍ତରୀ ପଢ଼ୁଥିବେ ସେମାନେ ଏଭଳି ରୋଗସବୁ ହେଉଥିଲା ବୋଲି ଔଷଧ ବିଜ୍ଞାନ ଇତିହାସ ପଢ଼ି ଜାଣିପାରିବେ ।

ବର୍ତ୍ତମାନ ଯେଉଁସବୁ ରୋଗ ଯଥା : ହୃଦ୍‌ରୋଗ, କାନସର୍, ସେରବ୍ରାଲ ଥ୍ରମ୍ବୋସିସ୍, ଷ୍ଟ୍ରୋକ୍ ପ୍ରଭୃତି ସାଧାରଣ ମୃତ୍ୟୁର କାରଣ ହୋଇଛି, ୫୦ ବର୍ଷ ପରେ ସେମାନଙ୍କର ଉପଦ୍ରବ ବିଶେଷ ପରିମାଣରେ କମିଯିବ । ବହୁତ ଗବେଷକ ମନେକରନ୍ତି ୨୦ ବର୍ଷ ମଧ୍ୟରେ ସେମାନେ କାନସର୍ ଭଲ କରିବାର ଉପାୟ ପାଇଯିବେ ।

ଏବେ ଗବେଷଣାରୁ ଜଣାପଡ଼ୁଛି, କେତେକ ପାର୍ଶ୍ୱଜୀବୀ ଭୂତାଣୁ ବା ଭାଇରସ ଅନେକ ପ୍ରକାର କାନସର୍ ପାଇଁ ଦାୟୀ । ପାରିପାର୍ଶ୍ୱିକ ଅବସ୍ଥା, ବଂଶଗତ ପ୍ରକୃତି ଏହି ଭୂତାଣୁମାନଙ୍କୁ ଶରୀରରେ ଏପରି ଭାବରେ ବଦଳାଇ ଦିଅନ୍ତି ଯେ ସେମାନେ କାନସର୍ ସୃଷ୍ଟି କରନ୍ତି । ଏଭଳି କାନସର୍‌କୁ ରୋକିବା ପାଇଁ ଇଣ୍ଟରଫେରନ୍ ବୋଲି ଏକ ଔଷଧ ବାହାରିଛି । କାନ୍‌ସର୍ କୋଷବୃଦ୍ଧିକୁ ଏହା ଇଣ୍ଟରଫିଅର କରେ ବା ରୋକେ ବୋଲି ଏହାର ନାମକରଣ ଏପରି ଭାବରେ କରାଯାଇଛି । ଏହି ଔଷଧ ଜୀବକୋଷରୁ ତିଆରି ହୁଏ । ବର୍ତ୍ତମାନ ଏଭଳି ଅବସ୍ଥା ହେଲାଣି ମଣିଷ କୋଷକୁ ରସାୟନାଗାରରେ କୌଣସି ଜୀବାଣୁ କୋଷରେ ଲଗାଇ-ଦେଲେ ସେହି ଜୀବାଣୁ ମଣିଷ କୋଷରୁ ବାହାରୁଥିବା ଇଣ୍ଟରଫେରନ୍ ପରି, ଇଣ୍ଟରଫେରନ୍ ବାହାର କରିପାରୁଛି । ଅଛୀତରେ ଯୁକ୍ତରାଷ୍ଟ୍ର ଆମେରିକା ରହଣି କାଳରେ ଲେଖକ ନ୍ୟୁୟର୍କର ସ୍ଲୋଆନ୍ କାଟରିଙ୍ଗ୍ କାନସର ହସପିଟାଲରେ ଏଭଳି ଗବେଷଣା ଚାଲିଥିବାର ଦେଖି ଆସିଥିଲେ । ଏହା ଫଳରେ ଇଣ୍ଟରଫେରନର ଅଭାବ ରହିବ ନାହିଁ ଏବଂ ଏହି ଔଷଧ ସାହାଯ୍ୟରେ ଭୂତାଣୁ ଦ୍ୱାରା ହେଉଥିବା କାନସର୍-ଗୁଡ଼ିକ ବହୁ ପରିମାଣରେ ଆୟତ୍ତ ହୋଇପାରିବ ।

୨୦୫୦ ମସିହା ବେଳକୁ ଜୀବନ ୧୨୦ ବର୍ଷରୁ ଅଧିକ ବଢ଼ାଇବା ପାଇଁ ଗବେଷଣା ଚାଲିବ ଏବଂ ୯୦ ବର୍ଷ ପୂର୍ବରୁ ଯେଉଁମାନେ ମରିଯିବେ, ସେମାନେ ଅଳ୍ପାୟୁ ବୋଲି ଧରାଯିବେ । ଏହି ପରିପ୍ରେକ୍ଷୀରେ କାଲିଫର୍ଣ୍ଣିଆ ମେଡ଼ିକାଲ ସ୍କୁଲର ପଲ ସିଗଲ ଓ ପଲ୍ ଟିମିରାଙ୍କ ଗବେଷଣା ଉଲ୍ଲେଖ-ଯୋଗ୍ୟ । ସେମାନେ ମୂଷାମାନଙ୍କୁ ଟ୍ରିପ୍‌ଟୋଫେନ୍ ନାମକ ଏକ ଖାଦ୍ୟ ଖାଇବାକୁ ଦେଲେ ନାହିଁ । ଟ୍ରିପ୍‌ଟୋଫେନ୍ ଏକ ପୁଷ୍ଟିସାର ଖାଦ୍ୟ ।

ଏହା ଫଳରେ ୨୮ ମାସର ମାଈ ମୂଷାଙ୍କର ମଧ୍ୟ ପିଲା ହେଲା । ମୂଷାମାନେ ୨ ବର୍ଷ ପରେ ଛୁଆ କରିବା ଏକ ଅସାଧାରଣ ଘଟଣା । ୨୮ ମାସର ମୂଷା ଜଣେ ୭୦ ବର୍ଷ ବୟସ୍କା ମହିଳା ଭଳି । ଏହି ଖାଦ୍ୟ, କେତେକ ଔଷଧ, ଭିଟାମିନ୍ 'ସି' ଏବଂ ଭିଟାମିନ୍ 'ଇ' ପ୍ରଭୃତି ବୟସର ମାତ୍ରାଧିକ୍ୟକୁ କମେଇ ଦେଇ ପାରୁଛି । ତେଣୁ ୭୦ ବର୍ଷ ମହିଳା ମଧ୍ୟ ବେଶ୍ ତରୁଣୀ ରହିପାରିବେ ଏବଂ ପିଲା ଜନ୍ମ କରିପାରିବେ ।

ଏହା ବ୍ୟତୀତ ଜୀବ-ବିଜ୍ଞାନବିତ୍ ଲିଓନାର୍ଡ୍ ହେଫ୍ଲିକ୍‌ଙ୍କ ମତରେ ପ୍ରତ୍ୟେକ ପ୍ରାଣୀର ଦେହରେ ଏକ ଜୈବିକ ଘଣ୍ଟା ଅଛି । ପ୍ରତ୍ୟେକ ଜୀବକୋଷ କେତେଥର ବିଭକ୍ତ ହୋଇ ନୂତନ କୋଷ ସୃଷ୍ଟି କରିବ ତାହା ଆଗରୁ ସ୍ଥିର ରହିଛି । କେବଳ କ୍ୟାନସର୍ କୋଷ ଏହି ନିୟମ ମାନୁନାହାନ୍ତି । ତେଣୁ ଯଦି ଏହି ଜୈବିକ ଘଣ୍ଟାର କଣ୍ଟାକୁ କୌଣସି ଔଷଧ ସାହାଯ୍ୟରେ ପଛକୁ ଅଣାଯାଇ ପାରିବ ତେବେ କ୍ୟାନସର୍ କଣ, ବୟସାଧିକ୍ୟକୁ ମଧ୍ୟ ସହଜରେ ଆୟତ୍ତ କରାଯାଇ ପାରିବ । ଏଭଳି ଧାରଣା ବୋଧହୁଏ ଭାରତର ମୁନିଋଷିମାନେ ଜାଣିପାରିଥିଲେ ଏବଂ ବୈରାଗ୍ୟ ଶତକର କର୍ତ୍ତା ଭର୍ତ୍ତୃହରିଙ୍କର ଚିର ତାରୁଣ୍ୟ ତାହାର ଉଦାହରଣ । ସେ ମୂଳ ତ ବର୍ତ୍ତମାନର ବୈଜ୍ଞାନିକମାନେ ପାଇପାରି ନାହାନ୍ତି କିନ୍ତୁ ଏହା ବେଶୀଦୂର ନୁହେଁ । ସେତେବେଳେ କିଏ ହେଲେ ଜଣେଅଧେ ଏଭଳି ଭାଗ୍ୟବାନ୍ ହେଉଥିଲେ କିନ୍ତୁ ବର୍ତ୍ତମାନର ଗବେଷଣା ସାମୂହିକ ବୟସାଧିକ୍ୟ କମେଇବାରେ ପ୍ରଭୂତ ସାହାଯ୍ୟ କରିବ ।

ଜନ୍ମ ସଂଖ୍ୟା କମିଯାଉଥିବ ଏବଂ ଅତି ବୟସ୍କ ଲୋକଙ୍କର ସଂଖ୍ୟା ବହୁ ପରିମାଣରେ ବଢ଼ିଯାଉଥିବ ଏବଂ ବୃଦ୍ଧାବନର ଗଣ୍ଠିବାତ, ମାନସିକ ବିକୃତି, ମନେ ନ ରହିବା ଭଳି ବସ୍ତୁତି ରୋଗଗୁଡ଼ିକ ସହଜରେ ଆୟତ୍ତ କରାଯାଇ ପାରିବ । ଦୁର୍ଘଟଣାରେ କୌଣସି ଅଙ୍ଗକ୍ଷୟ ଘଟିଲେ, ତାହା ପୁରୁଣା ଲୁଗା ଫୋପାଡ଼ି ଦେଇ ନୂଆ ଲୁଗା ପିନ୍ଧିଲାପରି ସହଜରେ ଅଙ୍ଗ ବଦଳାଯାଇ ପାରିବ । ସେଥିପାଇଁ ଅଙ୍ଗଗୁଡ଼ିକର ବ୍ୟାଙ୍କ୍ ମଧ୍ୟ ହୋଇଥିବ । ଯଥା :—ଦୁର୍ଘଟଣାରେ ଯକୃତ୍ ଫାଟିଗଲେ ଯକୃତ୍ ଗୋଟିଏ ଯୋଡ଼ା ଯାଇପାରିବ, ହୃତ୍‌ପିଣ୍ଡ ଫାଟିଗଲେ ହୃତ୍‌ପିଣ୍ଡ ବଦଳାଯାଇ ପାରିବ ।

• •

ଇଏ ହେଲା ବୋଧହୁଏ ସେଇ କଳ୍ପିତ ସ୍ୱର୍ଗରାଜ୍ୟ, କିନ୍ତୁ କେତେକ ଅସାଧାରଣ ଅସୁବିଧା ହୁଏତ ହୋଇପାରେ । ଏତେ ବଷ ବଞ୍ଚିଲାପରେ ଲୋକମାନେ ବୋଧହୁଏ 'ଇଚ୍ଛା ମୃତ୍ୟୁ' ପାଇଁ ଡାକ୍ତର-ଖାନାରେ ନାଁ ଲେଖାଇବେ । ପ୍ରାକୃତିକ ଖାଦ୍ୟ ପ୍ରାୟ ଅଭାବ ହୋଇ-ଯାଉଥିବ । କେବଳ ଉଚ୍ଚ ଶାସନ ପଦାଧିକାରୀ ଆଜିକାଲି ପରି ଭାତ, ଡାଲି, ସଜ ପରିବା, ମାଛ, ମାଂସ ଖାଇ ପାରୁଥିବେ । ସାଧାରଣ ଜନତା ବୋଧହୁଏ ଅଧିକ କୃତ୍ରିମ ଖାଦ୍ୟ ଉପରେ ଗୁରୁତ୍ୱ ଦେବେ । ପ୍ରାକୃତିକ ଖାଦ୍ୟ ଖାଇବା ବର୍ତ୍ତମାନର ପଞ୍ଚତାରକା ହୋଟେଲର ଖାଦ୍ୟ ଭଳି ବିଳାସପୂର୍ଣ୍ଣ ହେବ । ଜୈବିକ ପୁଷ୍ଟିସାର, ମାଂସ, ମାଛର ଅଭାବ ହେତୁ ମୃତ୍ୟୁ ପରେ ମଣିଷ ମାଂସରୁ ତିଆରି ବିସ୍କୁଟ ଖାଇବା ଅସମ୍ଭବ ହେବ ନାହିଁ ଏବଂ ଜୈବିକ ଇଞ୍ଜିନିୟରିଂ ଦ୍ୱାରା କୃତ୍ରିମ ଶାକସବଜି ମଧ୍ୟ ପ୍ରସ୍ତୁତି ହୋଇ ଲୋକମାନେ ବ୍ୟବହାର କରୁଥିବେ । ସେତେବେଳେ ମଣିଷ ସୌର ଜଗତରେ ସର୍ବତ୍ର ସୃଷ୍ଟି କରି ଇଲେକ୍ଟ୍ରୋନିକ ମସ୍ତିଷ୍କ ସାହାଯ୍ୟରେ ପୃଥିବୀ ନିୟନ୍ତ୍ରଣ କରୁଥିବ ।



---

ଈଶ୍ୱର-ବିଶ୍ୱାସହୀନତା, ଅସତ୍ୟତା, କ୍ରୋଧ, ଦାୟିତ୍ୱହୀନତା, ଦୀର୍ଘସୂତ୍ରିତା (କୌଣସି କାମ କରିବା ପାଇଁ ସମୟ ଗଡ଼ାଇବା), ଜ୍ଞାନୀ-ମାନଙ୍କ ପ୍ରତି ଅବହେଳା, ଆଳସ୍ୟପରାୟଣତା, ଇନ୍ଦ୍ରିୟ ଆସକ୍ତି, ଧନ ଲାଳସା, ଯେଉଁମାନେ ପ୍ରକୃତ ମାର୍ଗ ଜାଣନ୍ତି ନାହିଁ, ସେଇଭଳି ଲୋକଙ୍କ ପରାମର୍ଶ ଓ କୌଣସି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାରେ ଅବହେଳା, ଗୋପନୀୟତା ରକ୍ଷା କରିବାରେ ଅସାବଧାନତା, ସୁଯୋଗର ଅପବ୍ୟବହାର—ଏହିଗୁଡ଼ିକ ଜଣେ ଭଲ ମଣିଷର ଦୁର୍ଗୁଣ ବୋଲି ବିଚାର କରାଯାଏ ।

—ବାଲ୍ମୀକି ରାମାୟଣ

---

# ଅସ୍ଥି ଦାନ-ଅସ୍ଥି ରୋପଣ

ଯୁକ୍ତରାଷ୍ଟ୍ର ଆମେରିକାର ମାୟାମି ଟିସୁ ବ୍ୟାଙ୍କ୍ । ଆଟଲାଣ୍ଟିକ୍ ମହାସାଗରର ନୀଳ ଜଳରାଶି ଫ୍ଲୋରିଡ଼ା ରାଜ୍ୟରେ ଅବସ୍ଥିତ ଏହି ତାଳବଣ ବେଳାଭୂମିର ପାଦ ଧୌତ କରୁଅଛି । ବ୍ୟାଙ୍କ୍‌ର ନୈଋତ୍ୟ ଅଞ୍ଚଳର ପଞ୍ଚବିଂଶ ମହଲର ଅସ୍ତ୍ରୋପଚାରର କକ୍ଷରୁ ମହାସାଗରର ଉତ୍ତୁଙ୍ଗ ଲହରୀମାଳା, ଧବଳ ଫେନରାଜି ରାକା ରଜନୀର ଏକ କାବ୍ୟିକ ଦୃଶ୍ୟପଟ ସୃଷ୍ଟି କରୁଛନ୍ତି । ରାତିର ସେହି ନିର୍ଜନ ଲଗ୍ନରେ ଅସ୍ତ୍ରୋପଚାରରେ ବ୍ୟସ୍ତ ଅଛନ୍ତି ପୃଥିବୀର ଦୁଇଜଣ ଖ୍ୟାତନାମା ଅସ୍ଥିଶଲ୍ୟ ବିଶେଷଜ୍ଞ—ଡକ୍ଟର ପାଲିଡ୍ ମାମ୍ନେ ଏବଂ ଡକ୍ଟର ଥିଓଡ଼ର ମାଲିନିନ୍ । ରାତିର ଉତ୍ତର ମୁହୂର୍ତ୍ତ ପାଇଁ ଦୃକ୍‌ପାତ ନାହିଁ ।

ଏହି ଅସାଧାରଣ ଜରୁରୀ ଅସ୍ତ୍ରୋପଚାର ଏକ ଜୀବନ୍ତ ବ୍ୟକ୍ତି ଉପରେ ନୁହେଁ—ଏକ ମୃତ ଶବ ଉପରେ । ଚବିଶ ଘଣ୍ଟା ପୂର୍ବରୁ ରାସ୍ତା ଦୁର୍ଘଟଣାରେ ମୃତ ଜନ୍ ଏମୁରୀଙ୍କ ଦେହରୁ ଆବଶ୍ୟକ ଅସ୍ଥି ସଂଗ୍ରହ କରାଯାଇ ବ୍ୟାଙ୍କର ତରଳ ଯବକ୍ଷାରଜାନ ପ୍ଲାଣ୍ଟରେ ରଖାଯାଇଛି । ଏହି ଅସ୍ଥି ଦୁଇଦିନ ପରେ କର୍କଟ ରୋଗ ଭୋଗ କରୁଥିବା ଜନ୍ ଗ୍ୟାରେନ୍‌ଙ୍କ ଅଙ୍ଗରେ ରୋପଣ କରାଯିବ ।

ଜନ୍ ଗ୍ୟାରେନ୍‌ଙ୍କ ଜୀବନ ଇତିହାସ ଅତ୍ୟନ୍ତ କରୁଣ । ଚବିଶ ବର୍ଷ ବୟସ୍କ ଗ୍ୟାରେନ୍ ପାଞ୍ଚଫୁଟ ଦଶଇଞ୍ଚ ଉଚ୍ଚ । ଦୀର୍ଘ ବଳିଷ୍ଠ ଚେହେରା । ଫ୍ଲୋରିଡ଼ା ରାଜ୍ୟର ଶ୍ରେଷ୍ଠ ମାରାଥନ ଦୌଡ଼ାଳି । କିଛିଦିନ ତଳେ ଏକ ଦୌଡ଼ ପ୍ରତିଯୋଗିତାରେ ଭାଗନେଉଥିବା ସମୟରେ ସେ ଅନୁଭବ କଲେ, ତାଙ୍କର ଦକ୍ଷିଣ ପାଦ ତାଙ୍କର ନିର୍ଦ୍ଦେଶ ପାଳନ କରୁନାହିଁ । ଶରୀ ଚଞ୍ଚଳ ତାଙ୍କର ପାଦ ଯେଉଁଳି ସୁପ୍ତ । ଆତଙ୍କିତ

ଗ୍ୟାରେନ ଦୌଡ଼ରୁ ଅବ୍ୟାହତି ନେଇ ଭାବଲେ ଅତ୍ୟଧିକ ପରିଶ୍ରମ ହେତୁ ବୋଧହୁଏ ସେ ସ୍ନାୟବିକ ଦୌର୍ବଲ୍ୟ ଭୋଗ କରୁଛନ୍ତି, କିନ୍ତୁ ଭାଗ୍ୟର ବିଚିତ୍ର ବିଡ଼ମ୍ବନା । ବିଶେଷ ଏକ୍ସରେ ଓ ଆନୁଷଙ୍ଗିକ ପରୀକ୍ଷା ପରେ ଜଣାପଡ଼ିଲା ଅଙ୍କୁର ହୋଇ ପେଟ୍ଟାଭଳି ଏକ ଜଟିଳ କର୍କଟ ରୋଗର ଅର୍ବୁଦ ଗ୍ୟାରେନଙ୍କ ନିତମ୍ବାସ୍ଥିରୁ ବାହାରି ଉଦର ତଳର ସମସ୍ତ ଅଙ୍ଗକୁ ଆକ୍ରାନ୍ତ କରିଛି । ଏହି ଜଟିଳ ଅର୍ବୁଦର ଚିକିତ୍ସା ନିତମ୍ବର ଅର୍ଦ୍ଧେକ ସହିତ ଦକ୍ଷିଣ ପଦର ବିଚ୍ଛିନ୍ନିକରଣ । ଡାକ୍ତରୀ ଭାଷାରେ ଏହି ଅସ୍ତ୍ରୋପଚାରର ନାମ ହେମି ପେଲ୍‌ଭେକ୍ଟମି (Hemi Pelvectomy) ଏଭଳି ଜଟିଳ ଅସ୍ତ୍ରୋପଚାର ପରେ ଆଶାଦଣ୍ଡ ସହିତ ଛିଡ଼ାହେବା ମଧ୍ୟ ଦୁରୂହ ବ୍ୟାପାର, କାରଣ କୃତ୍ରିମ ଅଙ୍ଗକୁ ଭାର ଦେବାପାଇଁ ଉଦର ତଳରେ କୌଣସି ସ୍ଥାନ ନାହିଁ ।

ଏହିଭଳି ଜୀବନ ମରଣର ଏକ ସନ୍ଧିସନ୍ଧି ମୁହୂର୍ତ୍ତରେ ଗ୍ୟାରେନ୍ ଶରଣାପନ୍ନ ହେଲେ ମାୟୋମି ଟିସୁ ବ୍ୟାଙ୍କର । ଡକ୍ଟର ମାମ୍ଭେ ଓ ଡକଟର ମାଲିନନଙ୍କର ଆଶ୍ୱାସନା ଜନଙ୍କ ମନରେ ଆଶାର ଉଦ୍ରେକ କଲା । ପ୍ରଥମେ ଡକଟର ମାମ୍ଭେ କାହାର ନିତମ୍ବାସ୍ଥି ଗ୍ୟାରେନଙ୍କ ଅଙ୍ଗ ସହିତ ଅନୁକୂଳ ହେବ ତାହାପାଇଁ ଚେଷ୍ଟା ଚଳାଇଲେ ଏବଂ ବହୁ ପରୀକ୍ଷା ଓ ନିଦାନ ପରେ ସ୍ଥିର ହେଲା ଏମୁରିଙ୍କ ନିତାମ୍ବାସ୍ଥି ଏଥିପାଇଁ ଉପଯୁକ୍ତ ।

ଏଭଳି ଅସ୍ତ୍ରୋପଚାର ପୃଥିବୀର ସର୍ବପ୍ରଥମ ହେତୁ ମାମ୍ଭେ ତାଙ୍କର ଅସ୍ତ୍ରୋପଚାର ପୂର୍ବ ଯୋଜନାରେ ଲେଖିଥିଲେ— "ପ୍ରଥମେ ଆମମାନଙ୍କୁ ତଳପେଟ ଖୋଲି ଅର୍ବୁଦର ଆକୃତି ନିରୂପଣ କରିବାକୁ ହେବ । ଅର୍ବୁଦର ଚତୁଃପାର୍ଶ୍ୱରୁ ଗୁରୁତ୍ୱପୂର୍ଣ୍ଣ ଅଙ୍ଗଗୁଡ଼ିକୁ ଅଲଗା କରିବାକୁ ପଡ଼ିବ । ନିତମ୍ବାସ୍ଥିରୁ ଜଂଘାସ୍ଥିକୁ ବିଚ୍ଛିନ୍ନ କରାଯିବ । ଅର୍ବୁଦ ସହିତ ନିତମ୍ବରୁ ଅର୍ଦ୍ଧେକ ଅପସାରଣ କରାଯିବ । ରୋଗୀର ନିତମ୍ବାସ୍ଥିର ଅବଶିଷ୍ଟାଂଶ ସହିତ ସ୍କ୍ରୁ, କଣ୍ଟା ଓ ପ୍ଲେଟ୍ ସାହାଯ୍ୟରେ ଦାତାଙ୍କ ନିତମ୍ବାସ୍ଥି ସଂଯୋଗ ହେବ ।"

ଯୋଜନା ଅନୁସାରେ ଗ୍ୟାରେନଙ୍କ ଅସ୍ତ୍ରୋପଚାର ସଫଳ ହୋଇଛି । ଅସ୍ତ୍ରୋପଚାର ସମୟରେ ଗ୍ୟାରେନଙ୍କ ତଳ ପେଟରୁ

ନଅ କେଜ ଓଜନର ଅର୍ବୁଦ ସହିତ ନିତମ୍ବାସ୍ଥିର ଅର୍ଦ୍ଧେକ ଅପସାରଣ କରାଯାଇଛି ଏବଂ ଏମୁଷ୍ଟଙ୍କ ଦକ୍ଷିଣ ପଦ ଜଂଘାସ୍ଥି ସହ ଅର୍ଦ୍ଧେକ ନିତମ୍ବ ଗ୍ୟାରେନ୍‌ଙ୍କ ଅଙ୍ଗରେ ଯୋଡ଼ାଯାଇଛି । ଏହା ଫଳରେ ଗ୍ୟାରେନ୍ ଏବେ ସୁସ୍ଥହୋଇ କର୍କଟ ରୋଗର ରସାୟନିକ ଚିକିତ୍ସା ଗ୍ରହଣ କରିଛନ୍ତି । କର୍କଟ ରୋଗ ସମ୍ପୂର୍ଣ୍ଣ ଭଲ ହୋଇଛି କହିବା ପାଇଁ ଆହୁରି ଅନେକ ବର୍ଷ ଲାଗିବ । ଗ୍ୟାରେନ୍ ବର୍ତ୍ତମାନ ଚଲାବୁଲା, ଦୌଡ଼ାଧାପଡ଼ା କରିପାରୁଛନ୍ତି ।

ମାୟାମି ଟିସୁ ବ୍ୟାଙ୍କ ପନ୍ଦର ବର୍ଷ ହେଲା ପ୍ରତିଷ୍ଠିତ ହେଲାଣି । ପ୍ରତିଷ୍ଠା ପରଠାରୁ ପ୍ରାୟ ପନ୍ଦର ଶହ ମୃତ ଦାତା, ବିଭିନ୍ନ ସମୟରେ ତାଙ୍କର ଚର୍ମ, ଅସ୍ଥି, ମାଂସପେଶୀରଜ୍ଜୁ ଦାନ କରିଛନ୍ତି ଏବଂ ତାହା ଦଶହଜାରରୁ ଊର୍ଦ୍ଧ୍ୱ ଗ୍ରହୀତାଙ୍କ ଅଙ୍ଗରେ ରୋପଣ କରାଯାଇଛି । ଅନ୍ୟ-ମାନଙ୍କ ମଧ୍ୟରେ ଭାରତର ବିଶିଷ୍ଟ ସମାଜସେବୀ, ଭାରତ ଯୋଡ଼ ଆନ୍ଦୋଳନର ପ୍ରାଣପ୍ରତିଷ୍ଠାତା ପଦ୍ମବିଭୂଷଣ ବାବା ଆମଟେଙ୍କ ମେରୁ-ଦଣ୍ଡରେ ମଧ୍ୟ ଉପାସ୍ଥି ରୋପଣ କରାଯାଇଛି ।

ଏହା ବ୍ୟତୀତ ଅନ୍ୟ ଯେଉଁସବୁ ଅସ୍ଥିରୋପଣ କରାଯାଉଛି ସେଗୁଡ଼ିକ ହେଲା—କହୁଣି ଗଣ୍ଠି ରୋପଣ, ଦୁର୍ଘଟଣାରେ ଛେଚି ହୋଇ ଗୁଣ୍ଡା ଗୁଣ୍ଡା ହୋଇଯାଇଥିବା ହାଡର ପରିବର୍ତ୍ତନ, ବିଭିନ୍ନ ରୋଗରେ ପୋଲା ହୋଇଯାଉଥିବା ଅସ୍ଥି ମଧ୍ୟରେ ନୂତନ ଅସ୍ଥି ସଂଯୋଜନ, ମେରୁଦଣ୍ଡରେ ଥିବା ଉପାସ୍ଥିଗୁଡ଼ିକର ପୁନଃସ୍ଥାପନ ଇତ୍ୟାଦି ।

କହୁଣୀ ଗଣ୍ଠି ରୋପଣ ପରେ ସାଧାରଣତଃ ଦଶଦିନରୁ ତିରିଶ-ଦିନ ପର୍ଯ୍ୟନ୍ତ ପ୍ଲାଷ୍ଟର କରାଯାଏ ଏବଂ ବର୍ଷକ ପର୍ଯ୍ୟନ୍ତ ରୋଗୀ କୃତ୍ରିମ ଡ୍ରେସ ପିନ୍ଧନ୍ତି । କହୁଣି ରୋପଣ ପରେ ସାତବର୍ଷ ପର୍ଯ୍ୟନ୍ତ ଅନୁଧ୍ୟାନ କରାସରିଲାଣି । ରୋପିତ କହୁଣି ନିଜ କହୁଣି ଭଳି କାର୍ଯ୍ୟ କରୁଅଛି ଏବଂ ସାଧାରଣ କାର୍ଯ୍ୟରେ କୌଣସି ଅସୁବିଧା ହେଉନାହିଁ । କିନ୍ତୁ ଡାକ୍ତର-ମାନେ ଟେନିସ୍ କିମ୍ବା ବ୍ୟାଡ଼ମିଣ୍ଟନ୍ ଭଳି ଖେଳ ଖେଳିବାକୁ ମନା କରିଥାନ୍ତି ।

ଏଭଳି ଅସ୍ଥୋପଚାରର ଆଗରୁ ବ୍ୟବହୃତ ହେଉଥିବା ଲୌହ କିମ୍ବା ଧାତୁନିର୍ମିତ ଗଣ୍ଠିଠାରୁ ଉନ୍ନତତର ବୋଲି ପ୍ରମାଣିତ ହୋଇଛି ।

ଧାତବ ଗଣ୍ଠିଗୁଡ଼ିକ କିଛି ସମୟ ଅତିକ୍ରାନ୍ତ ହେବା ପରେ ଶରୀରର କାର୍ଯ୍ୟ ଗ୍ରହଣରେ ଦୁର୍ବଳ ହୋଇପଡ଼ନ୍ତି । ଏହାଫଳରେ ବାରମ୍ବାର ଅସ୍ତ୍ରୋପଚାର କରି ଏଗୁଡ଼ିକୁ ସ୍ୱସ୍ଥାନରେ ରଖିବାକୁ କିମ୍ବା ବଦଳାଇବାକୁ ପଡ଼ିଥାଏ । ରୋପିତ ଗଣ୍ଠିରେ ସେଭଳି ଅସୁବିଧା ହୁଏନାହିଁ ।

ଅସ୍ଥି ସଂଗ୍ରହ ହୃତପିଣ୍ଡ, ବୃକକ ପ୍ରଭୃତି ଅନ୍ୟ ଅଙ୍ଗ ସଂଗ୍ରହ ଭଳି ନୁହେଁ । ଏହା ମୃତ୍ୟୁର ସଙ୍ଗେ ସଙ୍ଗେ ସଂଗ୍ରହ ନକରି ଚବିଶ ଘଣ୍ଟା ମଧ୍ୟରେ ଫ୍ରିଜ୍‌ରେ ଥିବା ଶବରୁ ମଧ୍ୟ ସଂଗ୍ରହ କରାଯାଇପାରେ । ଚବିଶ ଘଣ୍ଟା ପରେ ଶବ ସଢ଼ିବା ଆରମ୍ଭ ହେଲେ ସେଥିରେ ଜୀବାଣୁ ବୃଦ୍ଧି ହୁଅନ୍ତି । ଗୋଟିଏ ମୃତ ଶରୀରର ଦେହରୁ କୋଡ଼ିଏ ଅସ୍ଥି ନିର୍ବିଘ୍ନରେ ସଂଗ୍ରହ କରାଯାଇପାରେ ଏବଂ ଜଣେ ଦାତାଙ୍କଠାରୁ କୋଡ଼ିଏ ଜଣ ଗ୍ରହୀତା ଉପକୃତ ହୋଇପାରନ୍ତି ।

ସଂଗ୍ରହାଗାରରେ ଦୁଇ ପ୍ରକାର ଭାବରେ ଏହି ଅସ୍ଥି କିମ୍ବା ଉପାସ୍ଥିକୁ ରଖାଯାଇଥାଏ । ଦୁଇ ସପ୍ତାହ ଧରି ଘନ ଶୀତଳକରଣ ଉପାୟରେ ଏହା ଶୁଖାଇ ଦିଆଯାଏ କିମ୍ବା ତରଳ ଯବକ୍ଷାରଜାନ ପାତ୍ରରେ ରଖି ଏହି ଘନ ଶୀତଳୀକରଣ କରାଯାଏ । ଘନ ଶୀତଳକରଣ ସାହାଯ୍ୟରେ ଶୁଷ୍କ ଅସ୍ଥିକୁ କୋଠରି ଉତ୍ତାପରେ ଅନିର୍ଦ୍ଦିଷ୍ଟ କାଳପାଇଁ ବାୟୁହୀନ ପାତ୍ରରେ ରଖାଯାଇଥାଏ ।

ଯକୃତ୍, ହୃତପିଣ୍ଡ, ବୃକକ ରୋପଣ ପରେ ଗ୍ରହୀତାର ଶରୀର ସାଧାରଣତଃ ଏହାକୁ ପ୍ରତିରୋଧ କରିଥାଏ । ସେଥିପାଇଁ ବହୁ ମୂଲ୍ୟବାନ୍ ଔଷଧ ଦେଇ ଶରୀରର ପ୍ରତିରୋଧକାରିଣୀ ଶକ୍ତିକୁ ସୁନିୟନ୍ତ୍ରିତ କରାଯାଇଥାଏ । ଅସ୍ଥିରୋପଣ ପରେ ସେଭଳି ବହୁମୂଲ୍ୟ ଚିକିତ୍ସାର ଆବଶ୍ୟକତା ହୁଏନାହିଁ ।

ଶରୀରର ଅନ୍ୟ ଟିସୁଗୁଡ଼ିକ ମଧ୍ୟରେ ପ୍ରତି ସମୟରେ ଯେଉଁଭଳି ନୂତନ କୋଷର ସୃଷ୍ଟି ହୋଇ ନବୀକରଣ କ୍ରିୟା ଅନବରତ ଚାଲିଥାଏ, ଅସ୍ଥିରୋପଣ ପରେ ନୂତନ ଅସ୍ଥିରେ ମଧ୍ୟ ସେହି ପ୍ରକ୍ରିୟା ଚାଲେ । ରୋପଣ ସମୟରେ ଏହି ଅସ୍ଥିରେ ଧମନୀ, ଶିରା କିମ୍ବା ମେରୁମଜ୍ଜା କିଛି ନଥାଏ । କିଛିଦିନ ପରେ ଲତାଟିଏ ମାଡ଼ି ମାଡ଼ି ଆସିଲାପରି ଏହି

ରୋପିତ ଅସ୍ଥିରେ ଧମନୀ ଶିରା ଏବଂ ମେରୁମଜ୍ଜା ଗ୍ରହୀତା ଶରୀରରୁ ଆସି ଆସେ ଆସେ ସେ ସ୍ଥାନ ଅଧିକାର କରନ୍ତି । କିଛି ବର୍ଷ ପରେ ତାଙ୍କ ଅସ୍ଥି ସମ୍ପୂର୍ଣ୍ଣ ରୂପେ ଲୋପ ପାଇଯାଏ ଏବଂ ନୂତନ ଅସ୍ଥିକୋଷର ସୃଷ୍ଟି ହେତୁ ତାହା ଗ୍ରହୀତାଙ୍କର ନିଜସ୍ୱ ଅସ୍ଥିରେ ପରିଣତ ହୁଏ ।

ପବିତ୍ର ଭାରତବର୍ଷ ଦଧିଚୀ ଋଷିଙ୍କ ଦେଶ । ବିଶ୍ୱରେ ଅସୁରକୁଳ ଯେତେବେଳେ ବୃତ୍ରାସୁରଙ୍କ ନେତୃତ୍ୱରେ ଦେବତା ତଥା ମନୁଷ୍ୟମାନଙ୍କ ଉପରେ ଅନ୍ୟାୟ ଅତ୍ୟାଚାର କରୁଥିଲେ ସେତେବେଳେ ଦେବରାଜ ଇନ୍ଦ୍ର ତାଙ୍କର ଦିବ୍ୟ ଅସ୍ତ୍ର ଏବଂ ବଜ୍ର ସାହାଯ୍ୟରେ ମଧ୍ୟ ବୃତ୍ରାସୁରଙ୍କୁ ପରାସ୍ତ କରି ପାରିନଥିଲେ । ଦଧିଚୀଋଷି ଇନ୍ଦ୍ରଙ୍କ ଅନୁରୋଧ କ୍ରମେ ବିଶ୍ୱ ହିତପାଇଁ ସ୍ୱେଚ୍ଛାମୃତ୍ୟୁ ବରଣ କରି ନିଜର ଅସ୍ଥି ଦାନ କରିଥିଲେ । ଏହି ଅସ୍ଥିଦାନ ଫଳରେ ସେଥିରୁ ଯେଉଁ ଅସ୍ତ୍ର ତିଆରି ହେଲା ତାହାଦ୍ୱାରା ବୃତ୍ରାସୁରଙ୍କୁ ମାରିଯାଇପାରିଥିଲା । ମାନବ ସମାଜ ହିତପାଇଁ ଜୀବିତା-ବସ୍ଥାରେ ସ୍ୱେଚ୍ଛାକୃତ ମୃତ୍ୟୁବରଣ କରି ଦଧିଚୀ ଯେଉଁ ଅସ୍ଥିଦାନ କରିଥିଲେ, ବିଶ୍ୱର କୌଣସି ସାହିତ୍ୟରେ ଏଭଳି ବର୍ଣ୍ଣନା ନାହିଁ । ଦଧିଚୀଙ୍କ ତ୍ୟାଗର ପଟାନ୍ତର ନାହିଁ ।

ଅସ୍ଥିରୋପଣର ଆନୁଷଙ୍ଗିକ ଖର୍ଚ୍ଚ ପ୍ରାୟ ଦଶ ହଜାର ଟଙ୍କା । ବର୍ତ୍ତମାନ ପାଇଁ ଭାରତ ଭଳି ଦେଶରେ ସର୍ବସାଧାରଣଙ୍କ ପାଇଁ ଏ ଚିକିତ୍ସା ବ୍ୟୟବହୁଳ ହୋଇପାରେ ମାତ୍ର ସୁସ୍ଥ ଜୀବନଯାପନ ପାଇଁ ଏହା ଅଧିକ ନୁହେଁ । ମଲାପରେ ଅସ୍ଥିଦାନ ଓ ଚକ୍ଷୁଦାନ ପାଇଁ ଜୀବିତା-ବସ୍ଥାରେ ଉଇଲପତ୍ର ରେଜିଷ୍ଟ୍ରି କରିବା ହେଉଛି ଏକ ମହତ୍ କାର୍ଯ୍ୟ ।

●

ଆଧୁନିକ ଚିକିତ୍ସା ବିଜ୍ଞାନର ଚମକପ୍ରଦ କାହାଣୀ

# କୃତ୍ରିମ ହୃତ୍‌ପିଣ୍ଡ

ଯୁକ୍ତରାଷ୍ଟ୍ର ଆମେରିକାରେ ଗୋଟିଏ ଛୋଟ ସହର ସଲ୍‌ଟ ଲେକ୍ ସିଟି । ଚାକିରିରୁ ଅବସର ନେବାପରେ ସେଠାରେ ରହୁଥିଲେ ଜଣେ ଦନ୍ତରୋଗ ବିଶେଷଜ୍ଞ । ନାଁ ତାଙ୍କର ବର୍ଣ୍ଣି କ୍ଲାର୍କ । ୧୯୭୯ ମସିହାରେ ତାଙ୍କୁ ଏକ ସାଙ୍ଘାତିକ ଭୂତାଣୁ ରୋଗ ଧରିଲା । ଭୂତାଣୁମାନେ ହୃତ୍‌ପିଣ୍ଡକୁ ଆକ୍ରମଣ କଲେ । ଭୂତାଣୁ ଜୀବାଣୁ ଭଳି ଅତି କ୍ଷୁଦ୍ର ଜୀବ, କିନ୍ତୁ ସେମାନେ ଜୀବାଣୁ ଭଳି ସାଧାରଣ ଅଣୁବୀକ୍ଷଣ ଯନ୍ତ୍ର ତଳେ ଆଦୌ ଦେଖାଯାନ୍ତି ନାହିଁ । ସେମାନଙ୍କୁ ଦେଖିବାକୁ ଯେଉଁ ଅତି ଶକ୍ତିଶାଳୀ ଅଣୁବୀକ୍ଷଣ ଯନ୍ତ୍ର ଦରକାର, ତାର ନାମ ଇଲେକ୍‌ଟ୍ରନ ଅଣୁବୀକ୍ଷଣ ଯନ୍ତ୍ର । ଏହି ଯନ୍ତ୍ର ସାହାଯ୍ୟରେ ଗୋଟିଏ ବସ୍ତୁର ଆକାର ୧ ଲକ୍ଷ ଗୁଣ ବଢ଼ାଯାଇପାରେ । ଜୀବାଣୁମାନେ ପାଣିରେ ଥିଲେ ସେମାନଙ୍କୁ ଯଦି 'ଫିଲ୍‌ଟର' ଯନ୍ତ୍ର ସାହାଯ୍ୟରେ ଛାଣି ଦିଆଯାଏ, ସେମାନେ ଛାଣି ହୋଇଯିବେ । ଭୂତାଣୁମାନେ କିନ୍ତୁ 'ଫିଲ୍‌ଟର' ଯନ୍ତ୍ରରେ ଛାଣି ହୋଇ ପାରନ୍ତି ନାହିଁ । 'ଫିଲ୍‌ଟର'ର ଯେଉଁ ଛୋଟ ଛୋଟ କଣା ଅଛି, ସେଗୁଡ଼ିକୁ ତାହା ପାରି ହୋଇଯାଆନ୍ତି । ଜୀବାଣୁମାନେ ନିଜ ଖାଦ୍ୟ ନିଜେ ସଂଗ୍ରହ କରି ବଞ୍ଚନ୍ତି; କିନ୍ତୁ ଭୂତାଣୁମାନେ ବଞ୍ଚିବାପାଇଁ ଜୀଅନ୍ତା ଜୀବକୋଷ ଦରକାର କରନ୍ତି । ତେଣୁ ଭୂତାଣୁମାନେ କେବଳ ଜୀବନ୍ତପଦାର୍ଥ ଦେହରେ ରହନ୍ତି; ଯଥା : ମଣିଷ, ପଶୁ, ଗଛ, ଲତା ଇତ୍ୟାଦି । ଏମାନେ ସବୁବେଳେ ଜୀବକୋଷ ଭିତରେ ରହୁଥିବାରୁ ଡାକ୍ତରୀ ଔଷଧରେ ଏମାନଙ୍କୁ ମାରିବା ସହଜ ନୁହେଁ । ତେଣୁ ଏଭଳି ରୋଗ ହେଲେ କେବଳ ରୋଗର ଲକ୍ଷଣ ଅନୁସାରେ ଔଷଧ ଦେଇ ରୋଗୀକୁ ଭଲ କରାଯାଏ । ବହୁତ ଭୂତାଣୁ ରୋଗ

ତିନି ଚାରି ସପ୍ତାହରେ ଆପେ ଆପେ ଭଲ ହୋଇଯାଏ । ଭୂତାଣୁଜନିତ ମସ୍ତିଷ୍କଜ୍ୱର ବା ହୃଦ୍‌ରୋଗ ହେଲେ ବଞ୍ଚିବା କଷ୍ଟକର ହୋଇପଡ଼େ ।

କ୍ଲାର୍କଙ୍କୁ ଭୂତାଣୁଜନିତ ହୃଦ୍‌ରୋଗ ହେବାରୁ ସେ ସିନା ବଞ୍ଚି-ଗଲେ, କିନ୍ତୁ ତାଙ୍କର ହୃତ୍‌ପିଣ୍ଡ ମାଂସପେଶୀ ସମ୍ପୂର୍ଣ୍ଣ ଦୁର୍ବଳ ହୋଇଗଲା । ଏହାକୁ ଡାକ୍ତରୀ ଭାଷାରେ କହନ୍ତି କାର୍ଡ଼ିଓମାଓପାଥି । ହୃତ୍‌ପିଣ୍ଡ ଏକ ମାଂସପେଶୀଗୁଳିତ ଯନ୍ତ୍ର । ଏହା ଭାରି ଶକ୍ତିଶାଳୀ । ହୃତ୍‌ପିଣ୍ଡ ଦିନକୁ ଅଶୀହଜାର କିଲୋମିଟର ଧମନୀରେ ରକ୍ତ ସଞ୍ଚାଳନ କରେ, ଠିକ ପାଣି ପାଇପ୍‌ରେ ପାଣି ମଡ଼ାଇଲା ଭଳି । ପୁଣି ଦିନକୁ ଏହା ଯେତିକ ରକ୍ତ ପମ୍ପ କରେ ତାର ପରିମାଣ ୨° ହଜାର ଲିଟର । ଏହି ଯନ୍ତ୍ରର ଏତେ କାମ ଯୋଗୁ ମଣିଷ ସୁରୁଖୁରୁରେ ଚଳୁଛି ।

ହୃତ୍‌ପିଣ୍ଡ ଦୁର୍ବଳ ହୋଇଗଲେ ଯେଉଁସବୁ ଲକ୍ଷଣ ପ୍ରକାଶ ପାଏ ତାକୁ ଡାକ୍ତରୀ ଭାଷାରେ କହନ୍ତି ହାର୍ଟ ଫେଲ୍ୟୁଅର (Heart Failure) ତାର ଓଡ଼ିଆ ରୂପାନ୍ତର ଅବସନ୍ନ ହୃତ୍‌ପିଣ୍ଡ କୁହାଯାଇପାରେ । ଏହାର ଅର୍ଥ ନୁହେଁ ଯେ ହୃତ୍‌ପିଣ୍ଡର କାର୍ଯ୍ୟ ବନ୍ଦ ହୋଇଯାଏ । ସେଭଳି ହେଲେ ତ ଲୋକ ମାତ୍ର ଦୁଇ, ତିନି ମିନଟ୍ ମଧ୍ୟରେ ମରିଯାଆନ୍ତା, କିନ୍ତୁ ଏଭଳି ରୋଗରେ ସାଧାରଣତଃ ଭାରି ଦୁର୍ବଳ ଲାଗେ । ପାହାଚ ଚଢ଼ିଲେ, ସାମାନ୍ୟ ପରିଶ୍ରମ କଲେ, ଦୌଡ଼ାଦୌଡ଼ି କଲେ ଛାତି ଧଡ଼ ଧଡ଼ ପଡ଼େ, ନିଶ୍ୱାସ ମାରିବାକୁ କଷ୍ଟ ହୁଏ । ଏହାର କିଛୁଦିନ ପରେ ଗୋଡ଼ ଫୁଲି-ଯାଏ ଓ ଡାହାଣ ପାଖ ପେଟ ଦରଜ ହୁଏ । ଯକୃତ୍ ବଢିଯାଏ ଏବଂ ବେଳେବେଳେ ପେଟରେ ପାଣି ଜମି ଜଳୋଦରୀ ହୁଏ । ବହୁତ ସମୟରେ କାଶ ଲାଗି ରହେ । ଜୀବନ ଦୁର୍ବିସହ ହୋଇଯାଏ । ଶେଯରୁ ଉଠି ଛିଡ଼ା ହେବା ମରଣାନ୍ତକ ହୁଏ । ପ୍ରଥମ ଅବସ୍ଥାରେ ଔଷଧ ଖାଇଲେ ରୋଗ ଆୟତ୍ତ ରହେ । ପରେ ରୋଗ ବଢ଼ିବାରେ ଲାଗେ ଏବଂ ଔଷଧ ଖାଇଲେ ମଧ୍ୟ ହୃତ୍‌ପିଣ୍ଡର ମାଂସପେଶୀଗୁଡ଼ିକ ଅତ୍ୟଧିକ ଦୁର୍ବଳ ଥିବା ହେତୁ ରକ୍ତ ସଞ୍ଚାଳନ କରାଇବାକୁ ସମର୍ଥ ହୁଅନ୍ତି ନାହିଁ, କାରଣ ପମ୍ପ୍ ଠିକ୍ ଠିକ୍ କାମ ନ କଲେ ପାଇପ୍‌ରେ ପାଣି ଆସିବ କିପରି ?

ଏଭଳି କ୍ଷେତ୍ରରେ କେବଳ ହୃତ୍‌ପିଣ୍ଡ ବଦଳାଇବା ଅପରେସନ୍ କରାଯାଏ । ହୃତ୍‌ପିଣ୍ଡ ବଦଳାଇବା ଏକ ବଡ଼ ଧରଣର ଅସ୍ତ୍ରୋପଚାର ।

ଏଥିରେ ବହୁତ ସମୟ ଲାଗେ । ଗସ୍ତା ଦୁର୍ଘଟଣା କିମ୍ବା ହୃଦ୍‌ରୋଗ ବ୍ୟତୀତ ଅନ୍ୟରୋଗରେ ମରୁଥିବା ଲୋକର ହୃତ୍‌ପିଣ୍ଡ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଅଣାଯାଇ ଏକ ସ୍ୱତନ୍ତ୍ର ରସାୟନିକ ପଦାର୍ଥରେ ରଖି ରୋଗୀଠାରେ ଆରୋପଣ କରାଯାଏ । ଏହା ପୂର୍ବରୁ କେଉଁ ହୃତ୍‌ପିଣ୍ଡ କେଉଁ ଲୋକ ସଙ୍ଗେ ଲାଗିବ ସେଥିପାଇଁ ସ୍ୱତନ୍ତ୍ର ପରୀକ୍ଷା କରାଯାଇଥାଏ ।

କିନ୍ତୁ କ୍ଲାର୍କଙ୍କ ଅବସ୍ଥା ଥିଲା ସ୍ୱତନ୍ତ୍ର । ଏତେ ବଡ଼ ଅସ୍ତ୍ରୋପଚାରର ସମ୍ଭାଳିବା ପାଇଁ ସେ ଅସମର୍ଥ ଥିଲେ । କିଣ କରାଯିବ ? ତାଙ୍କଠାରେ ପୃଥିବୀର ପ୍ରଥମଥର ପାଇଁ କୃତ୍ରିମ ହୃତ୍‌ପିଣ୍ଡ ଖଞ୍ଜାଯିବା ସ୍ଥିର ହେଲା । ସ୍ଥିର କଲେ ଉଟା ମେଡ଼ିକାଲ କଲେଜର ଅଠତିରିଶ ବର୍ଷ ବୟସ୍କ ଖ୍ୟାତନାମା ଶଲ୍ୟ ଚିକିତ୍ସକ ଡାକ୍ତର ଉଇଲିଅମ୍ ଡି ଭରିସ୍ ।

୧୯୮୨ ମସିହା ଡିସେମ୍ବର ପହିଲା ତାରିଖରେ ଚିକିତ୍ସାବିଜ୍ଞାନ କ୍ଷେତ୍ରରେ ପୁଣି ଏକ ନୂଆ ଅଧ୍ୟାୟ ସୃଷ୍ଟି ହେଲା । ସେଦିନ କ୍ଲାର୍କଙ୍କ ଛାତିରେ କୃତ୍ରିମ ହୃତ୍‌ପିଣ୍ଡ ଲାଗିଲା । ପ୍ରଥମଥର ପାଇଁ ମଣିଷ ତିଆରି ହୃତ୍‌ପିଣ୍ଡ କାମ ଆରମ୍ଭ କଲା । ଏହା ନ କରିଥିଲେ କ୍ଲାର୍କ ବୋଧହୁଏ ଆଉ ବଞ୍ଚି ନଥାନ୍ତେ ।

ଏହି କୃତ୍ରିମ ହୃତ୍‌ପିଣ୍ଡର ନାମ ଜାରଭିକ-୭ । ଏହାର ଉଦ୍ଭାବକ ଡକ୍ଟର ରବର୍ଟ ଜାରଭିକଙ୍କ ନାମ ଅନୁସାରେ ଏହାର ଏପରି ନାମକରଣ କରାଯାଇଛି ।

ଏହି ହୃତ୍‌ପିଣ୍ଡର ଓଜନ ୧୭୦ କିଲୋଗ୍ରାମ । ଯେ କୌଣସି ବୟସ୍କ ଲୋକର ଓଜନର ପ୍ରାୟ ଅଢ଼େଇ ଗୁଣରୁ ତିନି ଗୁଣ । ଏହି ଅପରେସନ ପରେ କ୍ଲାର୍କ ଯେଉଁଆଡ଼େ ଯିବେ ଏହି ଯନ୍ତ୍ରକୁ ସାଥିରେ ଏକ ଠେଲା ଗାଡ଼ିରେ ବୁହାଇ ସଙ୍ଗେ ସଙ୍ଗେ ନେବାକୁ ହେବ । ବହୁତ ସୁସ୍ଥ ଲୋକ ପ୍ରଶ୍ନ କରିପାରନ୍ତି ବଞ୍ଚିବାପାଇଁ ଦିନ ରାତି ୨୪ ଘଣ୍ଟା ଏଭଳି ବୋଝ ବୋହିବା ନିହାତି ଜରୁରୀ କି ? କିନ୍ତୁ କେବଳ ଭୁକ୍ତଭୋଗୀ ହିଁ ଏହିପ୍ରଶ୍ନର ଉତ୍ତର ଦେଇପାରିବେ । ସେ ଯାହା ହେଉ, ପୃଥିବୀ ଇତିହାସରେ କ୍ଲାର୍କ ହିଁ ପ୍ରଥମ ଲୋକ ଯେ କି କୃତ୍ରିମ ହୃତ୍‌ପିଣ୍ଡ ସାହାଯ୍ୟରେ ନିଜର ସମସ୍ତ ଦୈନନ୍ଦିନ କାର୍ଯ୍ୟ ସୁରୁଖୁରୁରେ ସମ୍ପାଦନ କରୁଛନ୍ତି ।

କୃତ୍ରିମ ହୃତ୍‌ପିଣ୍ଡ ଜାରଭିକ-୭ର ଆକାରସାଧାରଣ ହୃତ୍‌ପିଣ୍ଡ ଭଳି ନିଜ ହାତମୁଠା ସହିତ ସମାନ । ଏହା ପ୍ଲାଷ୍ଟିକ ଏବଂ ଆଲୁମିନିୟମ୍‌ରେ ତିଆରି । କିନ୍ତୁ ଏଥିରେ ଦୁଇଟି ଅଶୀ ସେଣ୍ଟିମିଟର ନଳୀ ବାହାରେ ବଡ଼ ରେଡ଼ିଓ ଭଳି ଥିବା ଯନ୍ତ୍ର ସାହାଯ୍ୟରେ ଲଗିଥାଏ । ଏହି ରେଡ଼ିଓ ଭଳି ଯନ୍ତ୍ରଟି କୃତ୍ରିମ ହୃତ୍‌ପିଣ୍ଡକୁ ଚଳାଏ ଏବଂ ଏହାକୁ ହ୍ୱିଲ୍ ଟ୍ରଲି ସାହାଯ୍ୟରେ ନେବାଆଣିବା ଦରକାର ହୁଏ । ଏହି ଅସ୍ତ୍ରୋପଚାର ପାଇଁ କ୍ଲାର୍କଙ୍କ ଗ୍ରୀବା ଏବଂ ପେଟରେ ପଚିଶ ସେଣ୍ଟିମିଟର କଟାଯାଇଥିଲା । ଏହାପରେ କିଛି ଦିନ କ୍ଲାର୍କଙ୍କ ଶରୀରରେ କୃତ୍ରିମ ହୃତପିଣ୍ଡ ସୁରୁଖୁରୁରେ ଚାଲିଥିଲା । ଏଥି ମଧ୍ୟରେ ଅବଶ୍ୟ ତାଙ୍କର ମୃତ୍ୟୁ ଘଟିଯାଇଛି ।



---

ଆପଣ ଯଦି ଜୀବନରେ ସ୍ୱାସ୍ଥ୍ୟ ଓ ଆନନ୍ଦ ପାଇବାକୁ ଚାହାନ୍ତି, ତେବେ ଆପଣଙ୍କୁ ଯେଉଁମାନେ ଭଲପାଆନ୍ତି, ପ୍ରଥମେ ସେମାନଙ୍କୁ ଧନ୍ୟବାଦ ଦେବା ଆରମ୍ଭ କରନ୍ତୁ । ସେମାନେ ଆପଣଙ୍କ ପାଇଁ ଯାହା କରୁଛନ୍ତି, ସେ କଥା ଆପଣଙ୍କ ପରିବାରକୁ ଜଣାନ୍ତୁ । ସକାଳୁ ଉଠି ପ୍ରଥମେ କହନ୍ତୁ—'ମୁଁ ଯେ ବଞ୍ଚିରହିଛି, ଏଥିପାଇଁ ମୁଁ କୃତଜ୍ଞ ।' ଯାହା କିଛି ଜିନିଷ ଆପଣଙ୍କୁ ମିଳୁଛି, ସେଥିପ୍ରତି ମଧ୍ୟ କୃତଜ୍ଞତା ପ୍ରକାଶ କରନ୍ତୁ ।

---

# ଜୀବନ ସନ୍ଧାନେ

ଏଇ ବହି ଖଣ୍ଡିକ ଧରିଲାବେଳେ ଏବଂ ଏ ବିଷୟରୁ ଦ'ଧାଡ଼ି ପଢ଼ିଲା ବେଳେ ଆପଣ ଜାଣନ୍ତି, ଆପଣଙ୍କ ଶରୀରରେ ଏହା ଭିତରେ ନିୟୁତ ନିୟୁତ କୋଷ ମରିଗଲେଣି ? ପ୍ରତି ମୁହୂର୍ତ୍ତରେ ଆପଣଙ୍କ ଅଜାଣତରେ, ଅଦେଖାରେ ନିୟୁତ ନିୟୁତ ନୂଆ କୋଷ ତିଆରି ହୁଅନ୍ତି ଓ ନିୟୁତ ନିୟୁତ ମୃତ୍ୟୁମୁଖରେ ପଡ଼ୁଥାନ୍ତି । ଏଇ ପ୍ରକ୍ରିୟା ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଅହରହ ଚାଲିଛି । ମୃତକୁ ବାଦ୍ ଦେଇ ନୂତନ ସୃଷ୍ଟି କରିବା ପ୍ରକୃତିର ଧର୍ମ ।




କୋଷ କହିଲେ ସହଜରେ ସାଧାରଣ କ୍ଷେତ୍ରରେ ମନରେ କୌଣସି ଧାରଣା କରି ହୁଏନାହିଁ । ଶରୀରର କୌଣସି ଅଂଶକୁ ଅତି ସରୁ କରି କାଟି ନିର୍ଦ୍ଦିଷ୍ଟ ରଙ୍ଗ ଦେଇ ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିଲେ ଏଥିରେ ସବୁ ଛୋଟ ଛୋଟ କୋଠରି ଦେଖାଯାନ୍ତି । ପ୍ରତ୍ୟେକ କୋଠରି ପ୍ରତ୍ୟେକଙ୍କଠାରୁ ଏକ ଆବରଣଦ୍ୱାରା ବିଚ୍ଛିନ୍ନ । ଏହି କୋଠରିକୁ ଡାକ୍ତରୀ ଭାଷାରେ କହନ୍ତି 'କୋଷ' । ଗୋଟିଏ କୋଠାଘର ଯେଉଁଳି ଖଣ୍ଡି ଖଣ୍ଡି ଇଟାରେ ତିଆରି, ଜଣେ ବୟସ୍କ ଲୋକର ଶରୀର ସେହିଭଳି ନିୟୁତ

ନିଯୁତ କୋଷରେ ତିଆରି । ଜଣେ ୪୫ ବର୍ଷ ବୟସ୍କ ୫ ଫୁଟ ୭ ଇଞ୍ଚ ଉଚ୍ଚ ପୁରୁଷ ଲୋକର ଦେହରେ କେତେ କୋଷ ଥିବା ଅନୁମାନ କରୁଛନ୍ତି —କୁହନ୍ତୁ ତ ? ଏହା ବୋଧହୁଏ ସନ୍ଧ୍ୟାବେଳେ ଆକାଶରେ ଖାଲି ଆଖିରେ ଦିଶୁଥିବା ତାରାମାନଙ୍କଠାରୁ ବେଶି । ସେମାନଙ୍କ ସଂଖ୍ୟା ଗଣା ସରିଲାଣି । ତାହା ୬୦୦ ବିଲିୟନ । ୧ ବିଲିୟନ ୧୦୦ ନିଯୁତ । ଏହାକୁ ଲୀଳାବତୀ ସୂତ୍ରରେ ଗଣନ୍ତୁ ତ !




ଆବରଣୀ କୋଷ    ହୃତ୍ପିଣ୍ଡ ମାଂସପେଶୀ କୋଷ

ଏ ପୃଥିବୀରେ ଯେଉଁଭଳି ମଣିଷ, ମାଙ୍କଡ଼, ଗାଈ, ମାଛ ପ୍ରଭୃତି ବିଭିନ୍ନ ଆକାର ପ୍ରକାରର ଜୀବନ୍ତ ପ୍ରାଣୀ ଅଛନ୍ତି, ସେଇଭଳି ଶରୀରରେ ବିଭିନ୍ନ ଆକାର ପ୍ରକାରର କୋଷ ସବୁ ଅଛନ୍ତି । ତେଣୁ କୌଣସି ଆକୃତିର କୋଷକୁ ଏକ ନିର୍ଦ୍ଦିଷ୍ଟ କୋଷ କୁହାଯାଇ ନପାରେ । କିଏ ଲମ୍ବା ତ କିଏ ଗୋଲ, କିଏ ଚାରିକୋଣିଆ ତ କିଏ ଛ' କୋଣିଆ । ଏମିତି କେତେ ପ୍ରକାରର । ସବୁଠୁ ବଡ଼ କୋଷ ହେଲା ଓଟପକ୍ଷୀର ଅଣ୍ଡା । ଏଇ ଅଣ୍ଡା ଏତେ ବଡ଼ ଯେ, ସାହାରା ମରୁଭୂମିରେ ଥିବା ଆଦିବାସୀମାନେ ଅଣ୍ଡାର ମଝିରୁ ଭାଙ୍ଗି କେଶର ଖାଇ ସାରିଲାପରେ ଏହାର ଖୋଳକୁ ପିଇବା ପାତ୍ର ରୂପେ ବ୍ୟବହାର କରିଥାନ୍ତି । ପୁଣି ଅନ୍ୟ ପକ୍ଷରେ ଏଭଳି ଛୋଟ ଛୋଟ କୋଷ ଅଛନ୍ତି ଯେ, ଗୋଟିଏ ଛୁଞ୍ଚିମୁନରେ ଏକ ନିଯୁତ କୋଷ ରହି ପାରିବେ । ପ୍ରକୃତରେ ପ୍ରକୃତିର ଲୀଳା ବିଚିତ୍ର ।

ବହୁ ପ୍ରକାର କୋଷ ଥିଲେ ହେଁ ମୁଖ୍ୟତଃ ଗୁରିପ୍ରକାର କୋଷ ଶରୀରର ଅଧିକାଂଶ କାମ କରିଥାନ୍ତି । ସେଗୁଡ଼ିକ ହେଲେ—ସ୍ନାୟୁକୋଷ, ଯାହା ଶରୀରରେ ବାର୍ତ୍ତା ସଞ୍ଚାଳନ ପାଇଁ ଦାୟୀ; ଆବରଣ କୋଷ, ଯେ ସାରା ଶରୀରକୁ ଚମଡ଼ାରେ ଘୋଡ଼ାଇ ରଖୁଛନ୍ତି ଏବଂ ଖାଦ୍ୟନଳୀ, ପରିସ୍ରାନଳୀ, ଶ୍ୱାସନଳୀ ପ୍ରଭୃତି ନଳୀ ମଧ୍ୟରେ ରହି ନଳୀକୁ ପରସ୍ପର ସହିତ ଲାଗି ନ ଯିବାରେ ସାହାଯ୍ୟ କରନ୍ତି; ସଂଯୋଗ କୋଷ, ଯେ ଶରୀରର ବିଭିନ୍ନ ଅଂଶକୁ ପରସ୍ପର ସହିତ ସଂଯୋଗ କରୁଛି, ଯଥା ମାଂସପେଶୀକୁ ହାଡ଼ ସହିତ; ଏବଂ ମାଂସପେଶୀ କୋଷ, ଯାହା ଶରୀରର ବହୁଳ କ୍ରିୟାରେ ସାହାଯ୍ୟ କରୁଛି ।

ଆପଣ ଏ ମଧ୍ୟରେ ଏହି ବିଷୟରୁ ଦୁଇଟି ପୃଷ୍ଠା ପଢ଼ି ସାରିଲେଣି ନା ? ଏହା ଭିତରେ ଆପଣଙ୍କ ପୁଅ କିନୁ ରେଡ଼ିଓରୁ କ୍ରିକେଟ୍ କମେଣ୍ଟାରୀ ଶୁଣୁଛି । ଯଦି ପ୍ରକୃତରେ ଆପଣ ଏ ଅଧ୍ୟାୟ ମନୋନିବେଶ କରି ପଢ଼ୁଥାନ୍ତି; ତାହାହେଲେ କାହାର ପାଟିତୁଣ୍ଡ, କ୍ରିକେଟ କମେଣ୍ଟାରୀ କିମ୍ବା ବିବିଧ ଭାରତୀ ଗୀତ ଆପଣଙ୍କୁ କିଛି ଶୁଣାଯିବ ନାହିଁ । ଏଭଳି କାମ କିଏ କରୁଛି ଭାବନ୍ତୁ ତ ? ଶରୀରର ମସ୍ତିଷ୍କ କୋଷ ବା ସ୍ନାୟୁ-କୋଷ । କମ୍ପ୍ୟୁଟର ଭଳି ଏହା କାମ କରିଥାଏ । ଏକ ସମୟରେ ଯେତିକି କାମ ଦରକାର, ତାହା ସେତିକି ମାତ୍ର କରିଥାଏ । ଏଭଳି କି ଆପଣ ଶୋଇଥିବା ବେଳେ ମଶାଟିଏ କାମୁଡ଼ିଲେ ମସ୍ତିଷ୍କ କୋଷର ନିର୍ଦ୍ଦେଶରେ ହାତ ଆପେ ଆପେ ଚାଲିଯାଇ ମଶାକୁ ହୁରୁଡ଼ାଇ ଦିଏ । ପଢ଼ିଲାବେଳେ ଆପଣ ଭାବୁଛନ୍ତି ଆପଣ ନିଜେ ପଢ଼ୁଛନ୍ତି ନା ? ପ୍ରକୃତରେ ଆପଣ କିଏ ? ଏହା ଆପଣଙ୍କ ମସ୍ତିଷ୍କ କୋଷ, ସ୍ନାୟୁକୋଷ, ସଂଯୋଗ କୋଷ ଏବଂ ମାଂସପେଶୀ କୋଷର କାମ । ବହି ଉଠାଇଲାବେଳେ ମାଂସପେଶୀ କୋଷ, ସଂଯୋଗ କୋଷ କାମ କରିଥାଏ । ପଢ଼ିଲାବେଳେ ସ୍ନାୟୁକୋଷ ହିଁ କାମ କରିଥାଏ । ଖାଇଲାବେଳେ ଆବରଣ କୋଷ ଓ ଅନ୍ୟାନ୍ୟ କୋଷ ମିଶି କାମ କରିଥାନ୍ତି ।

ଏଭଳି ସୂକ୍ଷ୍ମକାମ କରୁଥିବା କୋଷର ଆକାର କଥା ଆପଣ ତ ଜାଣିଗଲେଣି । ଏହା ଖାଲି ଆଖିରେ ଦେଖାନଯାଇ ଅଣୁବୀକ୍ଷଣ ଯନ୍ତ୍ରରେ

ଦେଖାଯାଏ । କିନ୍ତୁ ପ୍ରତ୍ୟେକ କୋଷ ଗୋଟିଏ ଗ୍ରେଟ ସହର ଭଳି । ସହରରେ ଯେଭଳି ବାର୍ତ୍ତା ସଞ୍ଚାଳନ ପାଇଁ ଟେଲିଫୋନ ଲାଇନ୍ ଥାଏ, ଆଲୋକ ପାଇଁ ବିଜୁଳି ଘର ଥାଏ, ମଇଳା ଜିନିଷ କାଢ଼ି ନେବାପାଇଁ ବ୍ୟବସ୍ଥା ଥାଏ ଏବଂ ସହରକୁ ରକ୍ଷା କରିବା ପାଇଁ ଯେଭଳି ପୋଲିସ-ବାହିନୀ ଥାଆନ୍ତି, ଗୋଟିଏ କୋଷ ମଧ୍ୟରେ ସେସବୁର ବ୍ୟବସ୍ଥା ହୋଇ-



ସ୍ନାୟୁ କୋଷ    ସଂଯୋଗ କୋଷ

ଥାଏ । ଏସବୁ ଜିନିଷ ଦରକାର କାହିଁକି ? ସବୁ ଜୀବନ୍ତ କୋଷ ବଞ୍ଚିବା ପାଇଁ ବିଦ୍ୟୁତ୍ଶକ୍ତି ଦରକାର । ପୋକଟିଏ ଉଡ଼ି ଆସିଲେ ଆପଣଙ୍କ ଆଖିପତା ଆପେ ଆପେ ବୁଜିହୋଇଯାଏ । ଦିନରାତି ଆପଣଙ୍କ ହୃତ୍ପିଣ୍ଡ ପ୍ରତି ମିନିଟରେ ୭୨ ଥର ସଙ୍କୁଚିତ ଓ ପ୍ରସାରିତ ହେଉଛି । ପ୍ରତି ମିନିଟରେ ଆପଣ ୨୦ ଥର ନିଶ୍ୱାସ ପ୍ରଶ୍ୱାସ ନେଉଛନ୍ତି । ଏସବୁ କ'ଣ ବିନା ଇନ୍ଧନରେ, ବିନା ଶକ୍ତିରେ ଚାଲିବ ? ଏହି ବିଦ୍ୟୁତଶକ୍ତି ତିଆରି କରିବା ପାଇଁ କୋଷ ଭିତରେ ଯେଉଁ ବିଦ୍ୟୁତ ଷ୍ଟେସନ ଅଛି, ତାକୁ ଡାକ୍ତରୀ ଭାଷାରେ କହନ୍ତି ମାଇଟୋ କଣ୍ଡ୍ରିଆ । ଏହାର ଆକାର ଡିମ୍ବଠୁ ଭଳି । କୋଷ ମଧ୍ୟରେ ଯେଉଁ ଚିନିଜାତୀୟ ଖାଦ୍ୟ ପ୍ରବେଶ କରେ, ତାହା ଏଇଠାରେ ଜଳେ ଏବଂ ସେଥିରୁ ବିଦ୍ୟୁତ୍ ତିଆରି ହୁଏ । ଏହା ପ୍ରତି ଜୀବନ୍ତ ପ୍ରାଣୀରେ—ଗଛଲତାଠାରୁ ଆରମ୍ଭ କରି ସର୍ବଶ୍ରେଷ୍ଠ ପ୍ରାଣୀ ମଣିଷ ମଧ୍ୟରେ ଅହରହ ଚାଲିଛି । ଏହା ହେଉନଥିଲେ ଜୀବନ ସମ୍ଭବ ହୁଅନ୍ତା ନାହିଁ । ଶୋଇଥିବା ବେଳେ ମଧ୍ୟ ଏ ଚୁଲି ଜଳୁଛି, ଯାହା ଫଳରେ ଶରୀର ଉଷ୍ମ ରହୁଛି । ନିଶ୍ୱାସ ପ୍ରବାହିତ ହେଉଛି । ହୃତ୍ପିଣ୍ଡ

ଧପ୍ ଧପ୍ କରି ଗତି କରି ଚାଲିଛି । ଏହା ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ । ଶରୀରର ସାଧାରଣ ଉତ୍ତାପ କେତେ ଆପଣ ଜାଣନ୍ତି ତ ? ୯୮.୪ ଡ଼ିଗ୍ରୀ ଫାରେନ୍‌ହାଇଟ୍ । କି ବର୍ଷା, କି ଶୀତ, କି ଖରା ପୃଥିବୀର ସବୁ ସ୍ଥାନରେ ଏହି ଉତ୍ତାପ ମାତ୍ରା ଅଧ ଡ଼ିଗ୍ରୀଏ ଏପଟ ସେପଟ । ତେଣୁ କିଭଳି ଏ ଶକ୍ତି ସଂପାଦନ, କିଭଳି ଏହାର ସଂରକ୍ଷଣ, ଟିକିଏ ଚିନ୍ତା କରନ୍ତୁ ତ !

କୋଷକୁ ଚଳାଇବା ପାଇଁ ଗୋଟିଏ କୋଷକେନ୍ଦ୍ର ରହିଛି । ଯେଉଁଭଳି ଗୋଟିଏ ସଂସ୍ଥାକୁ ଚଳାଇବା ପାଇଁ ଜଣେ ସର୍ବୋଚ୍ଚ ଶାସନ-କର୍ତ୍ତା ଥାଆନ୍ତି, ଏହି କୋଷକେନ୍ଦ୍ର ସେହିଭଳି ସାରା କୋଷକୁ ସବୁବେଳେ ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ଦେଉଥାଏ । ଏହି ନିର୍ଦ୍ଦେଶ ଅନୁସାରେ ହୃତ୍‌ପିଣ୍ଡର କୋଷ କେବଳ ଏହି କୋଷ ନିର୍ମାଣ କରେ । ସେହିଭଳି ହାଡ଼ର କୋଷ, ଫୁସଫୁସ୍‌ର କୋଷ, ଯକୃତ୍‌ର କୋଷ ଅନୁରୂପ କୋଷ ତିଆରି କରୁ-ଥାନ୍ତି । ଜିଭର କୋଷ ଯଦି ବାଳର କୋଷ ତିଆରି କରନ୍ତା, ତେବେ ଜିଭରେ ବାଳସବୁ ଉଠିବାକୁ ଲାଗନ୍ତା । କ'ଣ ଅସୁବିଧା ହେବ ଆପଣ ଭାବି ପାରୁଛନ୍ତି ତ ? ତେଣୁ ଏଭଳି ଶାସନ ଏକଛତ୍ରବାଦୀ ଶାସନ । ସେଥିରେ ଗଣତନ୍ତ୍ର ନାହିଁ । ଗଣତନ୍ତ୍ର ହେଲେ ମୃତ୍ୟୁ । କାରଣ ସେଭଳି ହେଲେ ଚର୍ମରେ ହାଡ଼, ଯକୃତ୍‌ରେ ହୃତ୍‌ପିଣ୍ଡ, ବୃକ୍‌କରେ ପାକସ୍ଥଳୀ ମଧ୍ୟ ତିଆରି ହୋଇଯାଇପାରେ ।

ପୁଣି କୋଷର ସୁରକ୍ଷା ପାଇଁ ଯେଉଁ ପୋଲିସ ବାହିନୀ ଅଛନ୍ତି, ତାହାର ନାମ କୋଷ ଆବରଣ । ଏହାର ମୋଟା ଏକ ମିଲିମିଟରର ଲକ୍ଷେ ଭାଗରୁ ଭାଗେ । କିନ୍ତୁ ଏହି ସୂକ୍ଷ୍ମ ଆବରଣ କୋଷର ଜୀବନ ନାଡ଼ି । ଏହା ଦ୍ୱାରପାଳ ଭଳି କେଉଁ ଜିନିଷ କୋଷ ଭିତରକୁ ଯିବ, ଏବଂ କେଉଁ ଜିନିଷ ସେଥିରୁ ବାହାରିବ, ତାହା ସ୍ଥିର କରିଥାଏ । ତାହା ନଥିଲେ ବାହାରର ବହୁତ ଜିନିଷ କୋଷ ଭିତରେ ପ୍ରବେଶ କରି-ଯାଆନ୍ତା । ଶରୀରର ରକ୍ତନଳୀରେ ବହୁ ବସ୍ତୁ ଇତସ୍ତତଃ ଭାବରେ ବୁଲୁଛନ୍ତି । ସେମାନେ ସବୁ କୋଷ ମଧ୍ୟରେ ପ୍ରବେଶ କରିଯାଆନ୍ତେ । ଏହିଭଳି ସୁରକ୍ଷା ନ ରହିଲେ ଆଖି ଡୋଳାରେ ବାଳ ଉଠିଯାଆନ୍ତା ।

ଏହି ସବୁ ନିୟମ ଭାଙ୍ଗି ଯାଉଥିବାରୁ କର୍କଟରୋଗ ସୃଷ୍ଟି ହୁଏ। ଏହି ରୋଗରେ କୋଷକେନ୍ଦ୍ର ଆବଶ୍ୟକ ଅନୁସାରେ କୋଷ ତିଆରି ନ କରି ଅଧିକ କୋଷ ତିଆରି କରେ, ଯାହାକୁ ଆମେ ଅର୍ବୁଦ କହୁ । ସେହିଭଳି କୋଷ ବିଭିନ୍ନ ସ୍ଥାନରେ ବଢ଼ିବାକୁ ଲାଗେ । ଯଦି ସ୍ତନର କୋଷ ଫୁସ୍‌ଫୁସ୍‌ରେ ବଢ଼େ, ତା'ହେଲେ ସ୍ତନ କ୍ୟାନ୍‌ସର ରୋଗ ଫୁସ୍‌ଫୁସ୍‌କୁ ବ୍ୟାପିଗଲାଣି ବୋଲି ଡାକ୍ତରମାନେ ମତ ଦିଅନ୍ତି ।

## ଦାନ୍ତ ପଡ଼ିଗଲା କାହିଁକି ?

କନ୍‌ଫୁସିୟସ ଥରେ ତାଙ୍କ ଶିଷ୍ୟମାନଙ୍କୁ କହିଲେ, "ମୋ ପାଟିକୁ ଚାହିଁ । ଏଥିରେ ପୂର୍ବରୁ ଦାନ୍ତ ଥିଲା । ଏବେ କ'ଣ ତୁମେ ଦାନ୍ତ ଦେଖିପାରୁଛ ?"

ଶିଷ୍ୟମାନେ ଗୁରୁଙ୍କ କଥାରେ କୌଣସି ଗୂଢ଼ ତତ୍ତ୍ୱ ଥିବାର ଅନୁଭବ କରି ଉତ୍ତର ଦେଲେ, "ଗୁରୁଦେବ, ଆମେ ତ ଗୋଟିଏ ବି ଦାନ୍ତ ଦେଖିପାରୁନୁ ।"

"ଆଉ ଜିଭ ଦେଖିପାରୁଛ ?" ଗୁରୁ ପୁଣି ପ୍ରଶ୍ନ କଲେ ।

"ଜିଭ ତ ଦେଖାଯାଉଛି ।" ଶିଷ୍ୟମାନେ ଉତ୍ସାହିତ ହୋଇ- କହିଲେ ।

ତା'ପରେ ଗୁରୁ ପଚାରିଲେ, "ଆଚ୍ଛା, ପାଟିରେ ଜିଭ ଥିଲା, ଦାନ୍ତ ମଧ୍ୟ ଥିଲା । ଏବେ କ'ଣ ହେଲା ଯେ, ଜିଭ ରହିଛି ଅଥଚ ଦାନ୍ତ ନାହିଁ ?"

ଶିଷ୍ୟମାନେ ଏ ପ୍ରଶ୍ନର କୌଣସି ଉତ୍ତର ଖୋଜି ପାଇଲେନି । ବିନମ୍ର ଭାବରେ କହିଲେ, "ପ୍ରଭୁ, ଆପଣ ହିଁ ଏହି ପ୍ରଶ୍ନର ଉତ୍ତର କହି ଦିଅନ୍ତୁ ।"

କନ୍‌ଫୁସିୟସ କହିଲେ, "ଦାନ୍ତ ହେଉଛି କଠୋର । ସେହି କାରଣରୁ ସେଗୁଡ଼ିକ ଗଳି ପଡ଼ିଲା ବା ସେଗୁଡ଼ିକୁ ଉପାଡ଼ି ଦିଆଗଲା । ଜିଭ ସ୍ୱଭାବତଃ କୋମଳ, ତେଣୁ ତାହା ରହିଗଲା । ଅତଏବ ତୁମେ କୋମଳ ହେବା ଉଚିତ । କଠୋର ହେଲେ ତୁମେ ଦିନେ ନା ଦିନେ ତଳକୁ ଖସିଯିବ । ବିନମ୍ରତା, କୋମଳତା ମନୁଷ୍ୟକୁ ଉଦାତ୍ତ ସ୍ତରକୁ ନେଇଯାଏ । ବଞ୍ଚି ରହିବାର ଏହା ହେଉଛି ଏକ ସହଜ ଗୁଣ ।"

# ଜୀବନ ସୃଷ୍ଟି

ମଣିଷ ଶରୀରରେ ଯେଉଁ ନିୟୁତ ନିୟୁତ କୋଷ ଅଛନ୍ତି, ସେମାନଙ୍କ ଭିତରେ ସବୁଠୁ ବଡ଼ କୋଷ ହେଉଛି ସ୍ତ୍ରୀଲୋକର ଡିମ୍ବକୋଷ ଏବଂ ସବୁଠୁ ଛୋଟ ପୁରୁଷର ଶୁକ୍ରକୀଟ କୋଷ । କିନ୍ତୁ ଦୁଇଟିଯାକ କୋଷ କେହି ଖାଲି ଆଖିରେ ଦେଖାଯାନ୍ତି ନାହିଁ । ଜଣେ ସ୍ତ୍ରୀ ଲୋକର ତଳପେଟର ଦୁଇପଟେ ଦୁଇଟି ଡିମ୍ବାଶୟ (ovary) ଅଛି । ଜନ୍ମହେବା କାଳରୁ ସାରା ଜୀବନ ପାଇଁ ବହୁଡିମ୍ବକୋଷ ଏହି ଡିମ୍ବାଶୟରେ ଥାଆନ୍ତି । କିନ୍ତୁ ସ୍ତ୍ରୀଲୋକ ଋତୁମତୀ ହେଲେ ପ୍ରତିମାସରେ ଗୋଟିଏ ମାତ୍ର ଡିମ୍ବକୋଷ 'ପକ୍ୱ' ହୋଇ ଡିମ୍ବାଶୟରୁ ବାହାରିଥାଏ । ଡିମ୍ବକୋଷ କେଉଁ ମାସରେ ବାମପଟରୁ ବାହାରିବ ବା ଡାହାଣପଟରୁ ବାହାରିବ, ତା'ର କିଛି ସ୍ଥିରତା ନାହିଁ । ଜଣେ ସ୍ତ୍ରୀଲୋକ ସାଧାରଣତଃ ୧୫ ବର୍ଷରୁ ୪୫ ବର୍ଷ ମଧ୍ୟରେ ଅର୍ଥାତ୍ ୩୬୦ ମାସରେ ୩୬୦ଟି ଡିମ୍ବକୋଷ ତ୍ୟାଗ କରିଥାଏ । ଯେଉଁ ସ୍ତ୍ରୀ ଲୋକମାନଙ୍କ ଋତୁସ୍ରାବ ଅଧିକ ବୟସ ପର୍ଯ୍ୟନ୍ତ ହେଉଥାଏ, ସେମାନଙ୍କ କ୍ଷେତ୍ରରେ ପକ୍ୱ ଡିମ୍ବକୋଷ ସଂଖ୍ୟା ୪୦୦ରୁ ୪୫୦ ପର୍ଯ୍ୟନ୍ତ ହୋଇପାରେ ।

କିନ୍ତୁ ଡିମ୍ବାଣୁରେ କେତେ ଡିମ୍ବକୋଷ ଥାଆନ୍ତି, ଆପଣ ଜାଣନ୍ତି କି ? ଅନୁମାନ କରନ୍ତୁ ତ ! ସେମାନଙ୍କ ସଂଖ୍ୟା ପ୍ରାୟ ୫ ଲକ୍ଷ କିନ୍ତୁ ସବୁ ଡିମ୍ବକୋଷ ଭାଗ୍ୟରେ 'ପକ୍ୱ' ହେବାର ସୁଯୋଗ ଜୁଟେ ନାହିଁ । ଏହା ପ୍ରକୃତିର ଏକ ଚରମ ବଦାନ୍ୟତା । ସୃଷ୍ଟିର ପ୍ରକ୍ରିୟା ପାଇଁ ଈଶ୍ୱରଙ୍କ ଅନୁପମ ଅବଦାନ । ବହୁ ଡିମ୍ବକୋଷ ନଷ୍ଟ ହେଉ, କିନ୍ତୁ ଅଭାବ ନହେଉ । ଯେଉଁ ପ୍ରାଣୀ ଜନ୍ମ କଲାପରେ ସେମାନଙ୍କ ଛୁଆଙ୍କୁ କ୍ଷୀର ଦିଅନ୍ତି, ସେମାନଙ୍କର ସମସ୍ତଙ୍କର ଡିମ୍ବକୋଷ ଦେଖିବାକୁ ପ୍ରାପ୍ତ

ସମାନ । ତମି ହେଉ, ମୂଷା ହେଉ, କୁକୁରୀ ହେଉ, ଗାଈ ହେଉ ବା ମଣିଷ ହେଉ, ଏହାର ଆକୃତି ଏକପ୍ରକାର, କିନ୍ତୁ କେଉଁଥିରୁ ସବୁଠୁ ବଡ଼ ପ୍ରାଣୀ ତମି ବାହାରିଲେ କେଉଁଥିରୁ ମୂଷାଛୁଆଟିଏ ବାହାରୁଛି । ଏହି ଡିମ୍ବକୋଷର ଆକୃତି ଏଭଳି କ୍ଷୁଦ୍ର ଯେ, ଗୋଟିଏ ଛୁଂ ଛୁମୁଚରେ ୨୦୦ ନିୟୁତ ଡିମ୍ବକୋଷ ରହିପାରିବ ।

ଆଗକାଳରେ ଜଣେ ସ୍ତ୍ରୀଲୋକ ୧୫ରୁ ୪୫ ବର୍ଷ ବୟସ ମଧ୍ୟରେ ୧୦।୧୫ଟି ସନ୍ତାନସନ୍ତତିର ମା' ହେବା ପାଇଁ ସୁଯୋଗ ପାଉଥିଲେ । ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ଜନବିସ୍ଫୋରଣକୁ ଆଖି ଆଗରେ ରଖି ଯେଉଁ ଜାତୀୟ ନୀତି ପ୍ରଣୟନ କରାଯାଇଛି, ସେଥିରେ ମାତ୍ର ଗୋଟିଏ ବା ଦୁଇଟି ଡିମ୍ବକୋଷ (ovum ଆବଶ୍ୟକ । ସୃଷ୍ଟିର ଉଦ୍ଦେଶ୍ୟ ଓ ସାମାଜିକ ପରିସ୍ଥିତିରେ କି ଅପୂର୍ବ ପରିବର୍ତ୍ତନ !

ଡିମ୍ବାଶୟର ଆକୃତି ଗୋଟିଏ ବାଦାମ ପରି । ଲମ୍ବ ୩ ସେଣ୍ଟି-ମିଟର ଏବଂ ଓଜନ ପ୍ରାୟ ୮ ଗ୍ରାମ୍ । ପ୍ରକୃତରେ ଯାହାସବୁ ସ୍ତ୍ରୀ-ସୁଲଭ ଗୁଣ, କେବଳ ଏହି ଡିମ୍ବାଶୟ ଯୋଗୁ ହିଁ ବିକଶିତ ହୋଇଥାଏ । ଏହି ଡିମ୍ବାଶୟରୁ ରସ (Hormone) ବାହାରିଲେ ୧୨ରୁ ୧୫ ବର୍ଷ ମଧ୍ୟରେ ଝିଅଟିଏ ରଜସ୍ୱଳା ହୁଏ । ଏହି ରସ ପ୍ରକ୍ରିୟାରେ ସ୍ତନ ଓ ନିତମ୍ବର ମାଂସ ଓ ଚର୍ବି ବୃଦ୍ଧି ହୋଇଥାଏ ଏବଂ ଏହାର ପ୍ରକ୍ରିୟାରେ ରତିକ୍ରିୟା ପାଇଁ ଇଚ୍ଛା ହୋଇଥାଏ ।

ପିଲାଦିନରୁ ଡିମ୍ବାଶୟରେ ଥିବା ୫ ଲକ୍ଷ ଅପକ୍ୱ ଡିମ୍ବକୋଷ ମଧ୍ୟରୁ ପ୍ରଥମ ଡିମ୍ବକୋଷଟି 'ପକ୍ୱ' ହେବାପାଇଁ କିପରି ବଛାଯାଏ, ତାହା ବୈଜ୍ଞାନିକମାନେ ଏପର୍ଯ୍ୟନ୍ତ ଜାଣିପାରି ନାହାନ୍ତି । ଯେଉଁ ଡିମ୍ବ-କୋଷ ପକ୍ୱ ହୁଏ, ତା'ର ଚାରିପଟରେ ଏକ ଆବରଣ ବୃଦ୍ଧି ପାଏ ଏବଂ ସେଥିରେ ଜଳୀୟ ଅଂଶ ବଢ଼ିବାକୁ ଲାଗେ । ତା'ପରେ ଡିମ୍ବକୋଷ ପାଣିଫୋଟକା ଭଳି ଡିମ୍ବାଶୟ ଉପରକୁ ଉଠିଆସେ । ସବୁଠୁ ଆଶ୍ଚର୍ଯ୍ୟର କଥା ଯେ, ଡିମ୍ବାଶୟରୁ ମାତ୍ର ଗୋଟିଏ ଫୋଟକା ବାହାରିଥାଏ । ଗୋଟିକରୁ ଅଧିକ ହେଲେ ସ୍ତ୍ରୀଲୋକ ଯାଆଁଳା କିମ୍ବା ତତୋଽଧିକ ସନ୍ତାନ ଜନ୍ମ କରିବାର ସମ୍ଭାବନା ଥାଏ ।

ଋତୁସ୍ରାବର ପ୍ରଥମ ଦିନରୁ ଦୁଇ ସପ୍ତାହ ପରେ ଏହି ଫୋଟକଟି ବଡ଼ ଆକାର ଧାରଣ କରେ । ସେହି ସମୟରେ ମସ୍ତିଷ୍କରେ ଥିବା ଅନ୍ତଃସ୍ରାବୀ ପୀୟୂଷ ଗ୍ରନ୍ଥି (Pituitary gland)ରୁ ଏକ ସ୍ୱତନ୍ତ୍ର ରସ ବାହାରେ । ଏହି ରସର ପ୍ରଭାବରେ ଫୋଟକଟି ସଙ୍ଗେ ସଙ୍ଗେ ଫାଟିଯାଏ ଏବଂ ଡିମ୍ବକୋଷଟି ସେହି ଜଳୀୟ ଅଂଶ ସହିତ ଭାସିଆସି ଗର୍ଭାଧାନ ନଳୀର ମୁହଁରେ ପଡ଼େ । ସୃଷ୍ଟି ପ୍ରକ୍ରିୟାରେ ଭାଗ ନେବା ପାଇଁ ଗୋଟିଏ ଡିମ୍ବକୋଷକୁ ୨୦।୩୦ ବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଥାଏ । ସୃଷ୍ଟିର ସମସ୍ତ ରହସ୍ୟ ଏବଂ ପରବର୍ତ୍ତୀ ବଂଶଧର ପାଇଁ ଆବଶ୍ୟକ କ୍ରୋମୋଜମ୍‌ଗୁଡ଼ିକ ଅର୍ଦ୍ଧେକ ଧରି ଏହା ଅପେକ୍ଷା କରି ରହିଥାଏ । ପୁରୁଷ ଶୁକ୍ରକୀଟର ଆଉ ଅର୍ଦ୍ଧେକ ଅଂଶ (୨୩ଟି କ୍ରୋମୋଜମ) ମିଶିଲେ ଶିଶୁ ସୃଷ୍ଟି ସମ୍ଭବ ହୋଇଥାଏ ।




ଡିମ୍ବକୋଷ ପକ୍ୱ ହେବା ସ୍ତ୍ରୀଲୋକ ଜୀବନରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ଯେଉଁ ରସ ବାହାରେ, ତାହା ସ୍ତ୍ରୀଲୋକକୁ ମାନସିକ ଓ ଶାରୀରିକ ସୁଖ-ଶାନ୍ତି ପ୍ରଦାନ କରିଥାଏ । ଗର୍ଭ ନଥାଇ ସ୍ୱାଭାବିକ ଭାବରେ ଋତୁ ବନ୍ଦ ହୋଇଗଲା ପରେ ଜଣେ ସ୍ତ୍ରୀଲୋକ ବହୁତ ବିରକ୍ତ ହୁଏ । ତା' ମୁହଁରୁ, ଦେହରୁ ନିଆଁ ବାହାରେ । ପ୍ରଚୁର ଝାଳ ବୁହେ ।

ଦେହ, ହାତ, ଗୋଡ଼ ଝିମିଝିମି ହୁଏ । ନିଦ୍ରା ହୁଏନାହିଁ । ଶୋଇଲାବେଳେ ବହୁତ ଅସ୍ୱାଭାବିକ ସ୍ୱପ୍ନ ଦେଖାଯାଏ । ଯୌନାଙ୍ଗରୁ ଉତ୍ତପ୍ତ ସ୍ରାବ ହୁଏ । ଭୋକ ହୁଏ ନାହିଁ । ଝାଡ଼ା ସଫା ହୁଏ ନାହିଁ । ଖୁବ୍ ଭୟ ଲାଗେ । ରକ୍ତନିସ୍ରା ପ୍ରତି ବିତୃଷ୍ଣା ଆସେ । କେତେକ ସ୍ତ୍ରୀଲୋକ ବେଳେବେଳେ ମୂର୍ଚ୍ଛା ହୋଇଯାଆନ୍ତି ।

ପ୍ରତି ମାସରେ ଏହି ଡିମ୍ବକୋଷ ସ୍ୱାଭାବିକ ଭାବରେ 'ପକ୍ୱ' ନହେଲେ ଅତ୍ୟଧିକ ରକ୍ତସ୍ରାବ ହୋଇଥାଏ କିମ୍ବା ଋତୁସ୍ରାବ ସମୟରେ ଯନ୍ତ୍ରଣା ହୁଏ । ଏଭଳି ହେଲେ ସନ୍ତାନ ସୃଷ୍ଟିରେ ବାଧା ଉପୁଜେ । ଏଥିପାଇଁ ହର୍ମୋନ୍ ଚିକିତ୍ସା କିମ୍ବା ପେଟଧୁଆ (D & C) ଅସ୍ତ୍ରୋପଚାର କରାଯାଏ । ଡିମ୍ବାଶୟରୁ ବାହାରୁଥିବା ହର୍ମୋନ୍‌ର ସ୍ୱାଭାବିକ ଅନୁପାତରେ ବ୍ୟତିକ୍ରମ ହେଲେ ସ୍ତନ, ଜରାୟୁ ଓ ଡିମ୍ବାଶୟରେ କର୍କଟ ରୋଗ(Cancer) ହେବାର ମଧ୍ୟ ସମ୍ଭାବନା ଥାଏ ।

'ପକ୍ୱ' ଡିମ୍ବକୋଷର ଫୋଟକାଟି ଡିମ୍ବାଶୟରୁ ଖସିପଡ଼ିଲା ପରେ ଖୁବ୍ ଅସୁବିଧାର ସମ୍ମୁଖୀନ ହୁଏ । ୨୪ ଘଣ୍ଟା ମଧ୍ୟରେ ଏହା ପୁରୁଷ ଶୁକ୍ରକୀଟ ସହିତ ମିଳିତ ନ ହେଲେ ଏହାର ମୃତ୍ୟୁ ହୋଇଥାଏ । ତେଣୁ ଏହି ୨୪ ଘଣ୍ଟା ପାଇଁ ଏହାକୁ ସାଇତି ରଖିବା ଲାଗି ପ୍ରକୃତି ସବୁ ସୁବିଧା କରିଥାଏ । ଏହି ସମୟରେ 'ପକ୍ୱ' ଡିମ୍ବକୋଷ ଚାରିପଟେ ଆଉ କେତେକ କୋଷ ସୃଷ୍ଟି ହୁଅନ୍ତି, ଯାହା ଫଳରେ ବାହାରର ଶତ୍ରୁ ଏହି କୋଷକୁ ସହଜରେ ଆଘାତ କରିପାରନ୍ତି ନାହିଁ । ଏହି କୋଷମାନେ ସେବିକା କାର୍ଯ୍ୟ କରୁଥିବାରୁ ଏହାକୁ ସେବିକା କୋଷ (Nurse Cell) କହନ୍ତି । ଗର୍ଭାଧାନ ନଳୀର ଅନ୍ଧକାରମୟ ଗହ୍ୱର ଏହାର ସୁରକ୍ଷା ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିଥାଏ । ଡିମ୍ବକୋଷ ଏହି ନଳୀ ଭିତରେ ଆସ୍ତେ ଆସ୍ତେ ଜରାୟୁ ଆଡ଼କୁ ଗତିକରେ ପୁରୁଷର ଶୁକ୍ରକୀଟ ସହିତ ମିଳିତ ହେବାପାଇଁ । ଗର୍ଭାଧାନ ପରେ ଏହା ଜରାୟୁରେ ଅବସ୍ଥାପିତ ହୁଏ । ଡିମ୍ବକୋଷରେ ଯେଉଁ ଶ୍ୱେତସାରୀୟ ଓ ସ୍ନେହସାରୀୟ ଖାଦ୍ୟ ଥାଏ, ତାହା ଆଠଦିନ ଚଳାଏ ଏବଂ ଏହା ପରେ ଡିମ୍ବକୋଷ ଜରାୟୁର ମାଂସପେଶୀରେ ସଂଯୁକ୍ତ ହୋଇ ରକ୍ତ ଟାଣି ଖାଦ୍ୟ ସଂଗ୍ରହ କରେ ।

ପୁରାଣରେ ଲେଖାଅଛି ଗର୍ଭାଧାନ ପରେ ଏହି ସଂଯୋଗ କୋଷ 'ଜଳରେ ମୀନ ଭଳି' ଗର୍ଭାଶୟ ମଧ୍ୟରେ ଭାସୁଥାଏ କିନ୍ତୁ ପ୍ରକୃତରେ ଏହା ଗର୍ଭାଶୟର ମାଂସପେଶୀ ସହିତ ସଂଯୁକ୍ତ ହୋଇ ସେଥିରୁ ରକ୍ତ ଟାଣି କ୍ରମେ କ୍ରମେ ବୃଦ୍ଧିପ୍ରାପ୍ତ ହୁଏ । ଏହି ପ୍ରକ୍ରିୟାରେ କୌଣସି ବ୍ୟତିକ୍ରମ ଘଟିଲେ ଗର୍ଭପାତ ହୋଇଥାଏ ।

ଆମର ପୂର୍ବକାଳର ଯୌନ ବିଜ୍ଞାନରେ ଯେଉଁ କେତେକ ଧାରଣା ଅଛି ତାହା ଆଧୁନିକ ଡାକ୍ତରୀ ବିଜ୍ଞାନସମ୍ମତ ନୁହେଁ । ସାଧାରଣତଃ ଧାରଣା—ଋତୁସ୍ରାବର ଠିକ୍ ପରେ ପରେ ସହବାସ କଲେ ସନ୍ତାନ ସୃଷ୍ଟି ହୋଇଥାଏ । ତାହା ଭ୍ରମାତ୍ମକ । ଋତୁସ୍ରାବର ପ୍ରଥମ ଦିନଠାରୁ ୧୪।୧୬ ଦିନ ବେଳକୁ ଡିମ୍ବକୋଷ ପକ୍ୱ ହୋଇ ଫାଟିଥିବାରୁ ଏହି ସମୟରେ ସହବାସ ହେଲେ ସନ୍ତାନ ସୃଷ୍ଟି ହୁଏ । ତେଣୁ ଯେଉଁ ଦମ୍ପତି ପ୍ରାକୃତିକ ଉପାୟରେ ସନ୍ତାନସନ୍ତତି ବନ୍ଦ କରିବାକୁ ଚାହାନ୍ତି, ସେମାନେ କେବଳ ଋତୁସ୍ରାବର ୧୪।୧୬ ଦିନ ରତିକ୍ରିୟା ବର୍ଜିଲେ ଶହେରେ ନବେ ଜଣ ପରିବାର ନିୟନ୍ତ୍ରଣ କରିପାରିବେ । ଏହି ୧୪।୧୬ ଦିନର ଏପଟେ ଦୁଇଦିନ କମା ସେପଟେ ଦୁଇଦିନ ବଢ଼ାଇ ଦିଆଯାଇ ପାରେ । ଆଉ ଯେଉଁମାନେ ସନ୍ତାନସନ୍ତତି କାମନା କରନ୍ତି, ସେମାନେ ଏହି ସମୟର ପୂର୍ଣ୍ଣ ସଦୁପଯୋଗ କରିବା ଆବଶ୍ୟକ ।




ଏପର୍ଯ୍ୟନ୍ତ ଆମେ ଡିମ୍ବକୋଷ ଓ ଡିମ୍ବାଶୟ ସମ୍ପର୍କରେ ଆଲୋଚନା କଲେ କିନ୍ତୁ ଶୁକ୍ରକୀଟ ଡିମ୍ବକୋଷଠାରୁ ଆହୁରି ବିସ୍ମୟକର । ଶୁକ୍ରକୀଟ ବହୁତ ଛୋଟ । ଏହାର ଗୋଟିଏ ମୁଣ୍ଡ ଓ ଗୋଟିଏ ଲାଞ୍ଜ ଅଛି । ମୁଣ୍ଡ-

ଠାରୁ ଲକ୍ଷ ୯ ଗୁଣ ବଡ଼ । ଏହାର ଆକୃତି ବେଙ୍ଗଫୁଲ ପରି । ଲାଙ୍ଗୁଡ଼ଟି କେବଳ ଗତି ପାଇଁ ଅଛି । ପ୍ରକୃତରେ ମୁଣ୍ଡଟି ସୃଷ୍ଟି ପାଇଁ ଆବଶ୍ୟକ ।

ଥରେ ସହବାସରେ ଜଣେ ସୁସ୍ଥ ଲୋକର ଯେତିକ ଧାତୁ ନିର୍ଗତ ହୁଏ, ସେଥିରେ ପ୍ରାୟ ୬୦୦ ନିୟୁତ ଶୁକ୍ରକୀଟ ଥାଆନ୍ତି । ଶୁକ୍ରକୀଟ ସହିତ କେତେକ ଗ୍ରନ୍ଥିକର ରସ ମଧ୍ୟ ନିର୍ଗତ ହୋଇଥାଏ । ଏହି ରସ ଶୁକ୍ର-କୀଟକୁ ଖାଦ୍ୟ ଯୋଗାଇବାରେ ସାହାଯ୍ୟ କରନ୍ତି । ଗୋଟିଏ ଶୁକ୍ରକୀଟର ଲମ୍ବ ଏକ ସେଣ୍ଟିମିଟରର ପ୍ରାୟ ୨୦୦ ଭାଗରୁ ଭାଗେ । ସ୍ତ୍ରୀ ଜନନେନ୍ଦ୍ରିୟ ଓ ଗର୍ଭାଧାନ ନଳୀ ପାର ହୋଇଯିବାପାଇଁ ଯେଉଁ ଦଶ ସେଣ୍ଟିମିଟର ରାସ୍ତା ଅଛି, ତାହାକୁ ପାର ହେବାପାଇଁ ଶୁକ୍ରକୀଟକୁ ବେଶ କିଛି କଷ୍ଟ କରିବାକୁ ହୋଇଥାଏ । ଜଣେ ଭଲ ଅଲମ୍ପିକ ସନ୍ତରଣକାରୀ ପାଇଁ ସ୍ରୋତର ପ୍ରତିକୂଳରେ ୧୦ କିଲୋମିଟର ପହଁରିବା ଯେଭଳି କଷ୍ଟକର, ଶୁକ୍ରକୀଟ ପାଇଁ ଏହା ସେହିଭଳି । ଏହି ବିପଦସଙ୍କୁଳ ରାସ୍ତା ହେତୁ, ବୋଧହୁଏ ଏକ ସମୟରେ ୬୦୦ ନିୟୁତ ଶୁକ୍ରକୀଟ ଜନନେନ୍ଦ୍ରିୟରେ ତ୍ୟାଗ କରିବା ଆବଶ୍ୟକ ପଡ଼େ । କିନ୍ତୁ ଗର୍ଭାଧାନ ପାଇଁ ଗୋଟିଏ ମାତ୍ର ଶୁକ୍ରକୀଟ ଦରକାର ହୋଇଥାଏ ।

ସାଧାରଣତଃ ଶୁକ୍ରକୀଟ କ୍ଷାରଯୁକ୍ତ (Alkaline) ପରିବେଶରେ ରହନ୍ତି । ସ୍ତ୍ରୀ ଜନନେନ୍ଦ୍ରିୟର ପରିବେଶ ଅମ୍ଳଯୁକ୍ତ (Acidic) ହୋଇ-ଥିବା ଯୋଗୁ ବହୁ ଶୁକ୍ରକୀଟ ସଙ୍ଗେ ସଙ୍ଗେ ମରିଯାଆନ୍ତି । ଏହି ଶୁକ୍ରକୀଟ-ଗୁଡ଼ିକର ମୃତ୍ୟୁପରେ ଅପୂର୍ବ ଶକ୍ତି ସଞ୍ଚାର ହୁଏ । ବଞ୍ଚିଯାଇଥିବା ଭାଗ୍ୟବାନ୍ ଶୁକ୍ରକୀଟମାନେ ମୃତ ଶୁକ୍ରକୀଟଙ୍କ କବର ଉପରେ ଆଗକୁ ମାଡ଼ିଚାଲନ୍ତି । କିନ୍ତୁ ଜରାୟୁ ଗ୍ରୀବାକୁ (Cervix) ଅତିକ୍ରମ କରିବା ସେମାନଙ୍କ ପାଇଁ କଷ୍ଟକର ହୋଇଥାଏ । ଜରାୟୁରେ ଥିବା ଅନ୍ୟ ଆବରଣ ପ୍ରତିବନ୍ଧକ ସୃଷ୍ଟି କରନ୍ତି । ଗୋଟିଏ ପରେ ଗୋଟିଏ ଆବରଣ ଏପରି ଭାଙ୍ଗିଲ ଯେ, ଏହା ଶୁକ୍ରକୀଟ ପାଇଁ ପର୍ବତାରୋହୀର ଶୃଙ୍ଗାରୋହଣ ସହିତ ତୁଳନା କରାଯାଇପାରେ । ଏଭଳି ଅବସ୍ଥାକୁ ଆସିବାକୁ ୬୦୦ ନିୟୁତରୁ ମାତ୍ର ୬୦୦୦ ଭାଗ୍ୟଶାଳୀ ଶୁକ୍ରକୀଟ ସକ୍ଷମ ହୋଇଥାଆନ୍ତି ।

କେଉଁ ମାସରେ ସ୍ତ୍ରୀଲୋକର କେଉଁ ଡିମ୍ବାଶୟରୁ ପକ୍ୱ ଡିମ୍ବକୋଷ ବାହାରିବ, ତାହା ଜଣାଯାଇନଥିବାରୁ ଅଧା ଶୁକ୍ରକୀଟ ପକ୍ୱ ଡିମ୍ବକୋଷ

ନଥିବା ଗର୍ଭାଧାନ ନଳୀ ଆଡ଼କୁ ଚାଲିଯାଆନ୍ତି ଏବଂ ଏହା ଫଳରେ ନଷ୍ଟ ହୋଇଯାଆନ୍ତି । ଖୁବ୍ କମ୍ ଶୁକ୍ରକୀଟ ୭୨ ଘଣ୍ଟା ପର୍ଯ୍ୟନ୍ତ ବଞ୍ଚିପାରନ୍ତି । ମାତ୍ର ପରିଶେଷରେ ସବୁଠୁ ଭାଗ୍ୟବାନ୍ ଶୁକ୍ରକୀଟଟି ଡିମ୍ବକୋଷକୁ ବିଦ୍ଧ କରି ସନ୍ତାନ ସୃଷ୍ଟିରେ ସାହାଯ୍ୟ କରିଥାଏ । ଏହି ସନ୍ତାନ ସୃଷ୍ଟି କେବଳ ଆକସ୍ମିକ ସୁଯୋଗ ଉପରେ ହିଁ ନିର୍ଭର କରେ । ଶୁକ୍ରକୀଟ ଡିମ୍ବକୋଷକୁ ବିଦ୍ଧ କଲାପରେ ତା'ର ଲାଞ୍ଜଟି ଛିଡ଼ିଯାଏ ଓ ସମ୍ପୂର୍ଣ୍ଣ ଶୁକ୍ରକୀଟ ଡିମ୍ବକୋଷ ମଧ୍ୟରେ ପ୍ରବେଶ କରିଯାଏ ।

ମଣିଷର ସବୁ କୋଷରେ ୪୬ଟି କ୍ରୋମୋଜମ୍ ଅଛନ୍ତି । ଏହି କ୍ରୋମୋଜମ୍‌ରେ ମଣିଷ ବିଷୟରେ ସବୁକଥା ଲିପିବଦ୍ଧ ଥାଏ ଓ ତଦନୁସାରେ ଶରୀର ଗଠନ, ଆକୃତି, ମାନସିକ ପ୍ରକ୍ରିୟା ଠିକ୍ ଠିକ୍ ଚାଲେ । କିନ୍ତୁ ଶୁକ୍ରକୀଟ ଓ ଡିମ୍ବକୋଷ ଏମାନେ ସ୍ୱତନ୍ତ୍ର । ଏଥିରେ ୨୩ଟି କରି କ୍ରୋମୋଜମ୍ ଥାଆନ୍ତି । ଗର୍ଭଧାନ ପରେ ଦୁଇଟିର ସଂଯୋଗ ଘଟିଲେ ୪୬ଟି କୋଷ ବିଶିଷ୍ଟ ସଂଯୋଗ କୋଷ ସୃଷ୍ଟି ହୁଏ । ଏହି ଗୋଟିଏ ସଂଯୋଗ କୋଷବୃଦ୍ଧି ପାଇଁ ୬୦୦ ମିଲିୟନ କୋଷବିଶିଷ୍ଟ ଏକ ଶିଶୁରେ ପରିଣତ ହୁଏ ।

ଜଣେ ସୁସ୍ଥ ପୁରୁଷର ଅଣ୍ଡକୋଷରେ (Testis) ଦୈନିକ ୫୦ ନିୟୁତ ଶୁକ୍ରକୀଟ ତିଆରି ହୁଅନ୍ତି । ଧାତୁ କ୍ଷୟ ହେଲେ ବହୁ ଲୋକ ବ୍ୟସ୍ତ ହୁଅନ୍ତି, କିନ୍ତୁ ସେଭଳି ବ୍ୟସ୍ତ ହେବାର କୌଣସି କାରଣ ନାହିଁ । କ୍ଷୟ ହେଉଥିବା ଧାତୁକୁ ପୂରଣ କରିବାପାଇଁ ଶରୀରରେ ଅହରହ ଏହି ପ୍ରକ୍ରିୟା ଚାଲିଥାଏ । ଜଣେ ସୁସ୍ଥ ଲୋକ ଶରୀରରେ ଦୁଇ ମାସରେ ଯେତିକି ଧାତୁ ସୃଷ୍ଟି ହୁଏ ଏବଂ ଯେତିକି ଶୁକ୍ରକୀଟ ତିଆରି ହୁଅନ୍ତି, ତାହା ସମଗ୍ର ପୃଥିବୀର ସମସ୍ତ ସ୍ତ୍ରୀ ଲୋକଙ୍କୁ ଗର୍ଭଧାନରେ ସାହାଯ୍ୟ କରିପାରିବ ।

ପୁରୁଷ ଲୋକଙ୍କ ଧାତୁରେ ପ୍ରତି ମିଲିଲିଟରରେ ୬୦ ନିୟୁତରୁ ୧୨୦ ନିୟୁତ ପର୍ଯ୍ୟନ୍ତ ଶୁକ୍ରକୀଟ ଥାଆନ୍ତି । ଏମାନଙ୍କ ସଂଖ୍ୟା ୧୦ ନିୟୁତରୁ କମ୍ ରହିଲେ ସନ୍ତାନ ସୃଷ୍ଟିରେ ଅସୁବିଧା ହୋଇଥାଏ କିନ୍ତୁ ବର୍ତ୍ତମାନ କାଳରେ ହର୍ମୋନ ଚିକିତ୍ସା ସାହାଯ୍ୟରେ ଖୁବ୍ କମ୍ ଶୁକ୍ରକୀଟ ଥିବା ପୁରୁଷ ଲୋକଙ୍କର ସନ୍ତାନ ସୃଷ୍ଟି କ୍ଷମତା ବୃଦ୍ଧି କରିଯାଇ ପାରୁଛି । ଏହା ଡାକ୍ତରୀ ବିଜ୍ଞାନର ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ।

●

# ସନ୍ତାନ ସୃଷ୍ଟିର କୁହେଳି :
# ପୁଅ ନା ଝିଅ ?

ତିନୋଟି ଝିଅର ମାଆ ସୁଜାତାଙ୍କ ବୟସ ସଇଁତିରିଶ ବର୍ଷ । ସ୍ୱାମୀ ଉଚ୍ଚପଦସ୍ଥ ପ୍ରଶାସନିକ ଅଫିସର । ରକ୍ଷଣଶୀଳ ପରିବାର । ବଡ଼ ଅଳ୍ପ ସତର, ସାନକୁ ସାତ । ଶାଶୁ ବିଧବା । ଅହରହ ପୂଜାପାଠରେ ବ୍ୟସ୍ତ । ଗତ ସତର ବର୍ଷ ଧରି ସୁଜାତା ଓ ତାଙ୍କ ଶାଶୁ ମା' ମଙ୍ଗଳାଙ୍କ ପାଖରେ ପ୍ରତି ମଙ୍ଗଳବାର କେତେ ପୂଜା କରିନାହାନ୍ତି ? ଆସନ୍ତା ଗର୍ଭଟି ପୁଅଟିଏ ହେଉ । କେତେ ତାବିଜ, ଜେଉଁରିଆ ପିନ୍ଧିଛନ୍ତି, ଡାକ୍ତର ଦେଖାଇଛନ୍ତି, କିନ୍ତୁ କୌଣସି ଫଳ ହୋଇନାହିଁ । ରୁବି, ଛବି ପରେ ଲିପି ଆସିଛି । ସେଦିନ ଡାକ୍ତରଙ୍କ ସଙ୍ଗରେ କଥା ହେଉ ହେଉ ସୁଜାତା କାନ୍ଦି ପକାଇଲେ, "ଲୋକ ଜହ୍ନରୁ ମାଟି ଆଣୁଛି, ଡାକ୍ତରବାବୁ ! ଗର୍ଭସ୍ଥ ସନ୍ତାନକୁ ପୁଅ କିମ୍ବା ଝିଅ କରିପାରୁନାହିଁ ? ଶାଶୁଙ୍କଠାରୁ କେତେ ଉଲୁଗୁଣା ସହିବି ? ଶାଶୁଙ୍କର ଗୋଟିଏ ପୁଅ ଥିବାରୁ ସେ ତାଙ୍କ ବାପାଙ୍କର ପିଣ୍ଡଦାନ କରୁଛନ୍ତି । ଏ କୁଳରେ ଆଉ କ'ଣ କେହି ପିଣ୍ଡ ଦେଇପାରିବେ ନାହିଁ ? ପୁଅଟିର ମୁହଁ ଆଉ ଦେଖି ହେବ ନାହିଁ ?"

ସର୍ବଭାରତୀୟ ପ୍ରଶାସନିକ ସେବାରେ ଥିବା ତାଙ୍କର ସ୍ୱାମୀ ଚାଳିଶବର୍ଷ ବୟସ୍କ ସୌଭାଗ୍ୟ ବାବୁ । ମୁହଁରେ ବଡ଼ ଠାଣି କଥା କହୁଥିଲେ ବେଳେ ମଧ୍ୟ ଅନ୍ତରର ନିଭୃତ କୋଣରେ ପୁଅଟିଏ ପାଇଁ ପ୍ରବଳ ଉତ୍କଣ୍ଠା ଲାଗି ରହିଥାଏ ତାଙ୍କର ।

ଗାଁରୁ ଆସି ପାଞ୍ଚପୁଅର ମାଆ ରଙ୍ଗନାଣି ବ୍ୟସ୍ତ ଯେ ତାଙ୍କର ଝିଅଟିଏ ନାହିଁ । କେଉଁ ଆଦମ କାଳରେ କୃଷ୍ଣଗାଳଟିଏ କନ୍ୟାଦାନ କରି ପରବର୍ତ୍ତୀ କାଳରେ ରାଜପଦ ଲାଭ କରିଥିଲେ । ରଙ୍ଗନାଣିର ବର ନରସିଂହ ଭାଇନା ବ୍ୟସ୍ତ ଯେ, ସେ ଜୀବନରେ ଗୋଟିଏ କନ୍ୟାଦାନ କରିପାରିବେ ନାହିଁ । ଇହଜନ୍ମର ସବୁ ପାପ ନେଇ ସେ ନର୍କକୁ ଯିବେ ।

ରଙ୍ଗନାମୀ ବଧୂଲ ବୋଉଙ୍କ କଥାରେ ଚକଅା ତଳେ ଦାଆ ଦେଇ ଶୋଇଛନ୍ତି । ନାଥଭାଇଠାରୁ ମୋଦକ ଆଣି ଖାଇଛନ୍ତି । କିନ୍ତୁ ଝିଅ କାହିଁ ? ଜାତକ ଦେଖି ଜ୍ୟୋତିଷ କହିଲେ—ତାଙ୍କର ତିନିଝିଅ ହେବାର ଅଛି କିନ୍ତୁ ଆଜିକାଲି ଯୁଗରେ ପାଠ ତ ବୋଲି ମାନୁନାହିଁ ।

ଡାକ୍ତରୀ ଜୀବନରେ ଏଭଳି ଶୁଣିବା ଏକ ନିତିଦିନିଆ ଘଟଣା ।

ବର୍ତ୍ତମାନ ପରିସ୍ଥିତିରେ ମଣିଷର ସୀମିତ ଜ୍ଞାନ ମଧ୍ୟରେ ଆବଶ୍ୟକ ଅନୁସାରେ ପୁଅଟିଏ କମ୍ବା ଝିଅଟିଏ କରିଯାଇ ପାରିବ । ପୁରୁଷର ଶୁକ୍ରକୀଟ ସ୍ତ୍ରୀର ଡିମ୍ବକୋଷ ସହିତ ମିଳିତ ହେବା ସମୟରେ ହିଁ ସନ୍ତାନର ଲିଙ୍ଗ ନିରୂପିତ ହୋଇଥାଏ । ଆମର ଭଗବତକାରଙ୍କ ମତରେ—"ପିତାମାତା ସଂଯୋଗ କାଳେ, ବିହି ଯାହା ଲିହୁଛି କପାଳେ" ଅନେକାଂଶରେ ସତ୍ୟ । ପିତାମାତାଙ୍କ ସବୁ ସଂଯୋଗ ଗର୍ଭାଧାନରେ ସାହାଯ୍ୟ କରେ ନାହିଁ । କିନ୍ତୁ ଯେଉଁ ସଂଯୋଗ ଗର୍ଭ-ସଞ୍ଚାର କରାଇଥାଏ, ସେଥିରେ ପରବର୍ତ୍ତୀ ଜୀବନର ସମସ୍ତ ତଥ୍ୟ କ୍ରୋମୋଜମ୍‌ର ଜିନ୍‌ରେ ଲିପିବଦ୍ଧ ଥାଏ—ଯେଭଳି କି କମ୍ପୁଟରର ମାଗ୍ନେଟିକ ଟେପ । ସେଥିରେ ସନ୍ତାନ ଯଦି ଝିଅ ହେବ ବୋଲି ଲିପିବଦ୍ଧ ହୋଇଗଲା, ତେବେ ତାହା ପରବର୍ତ୍ତୀ କାଳରେ କୌଣସି ପ୍ରକାରେ ବଦଳା ଯାଇପାରିବ ନାହିଁ । ସେହିଭଳି ପୁଅ ମଧ୍ୟ ଝିଅକୁ ପରିବର୍ତ୍ତିତ କରିଯାଇ ପାରିବ ନାହିଁ ।

ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ଯେ, ମଣିଷର କୋଷରେ ୨୩ ଯୋଡ଼ା ବା ୪୬ଟି କ୍ରୋମୋଜମ୍ ଅଛନ୍ତି । ଏଥିରେ ୨୨ ଯୋଡ଼ା ସାଧାରଣ କ୍ରୋମୋଜମ୍ ଏବଂ ଗୋଟିଏ ଯୋଡ଼ା ଲିଙ୍ଗବାହୀ କ୍ରୋମୋଜମ୍ । କ୍ରୋମୋଜମ ଏକ ଡାକ୍ତରୀ ଶବ୍ଦ । ବଡ଼ ବଡ଼ କୋଠାଘର ତିଆରି ପୂର୍ବରୁ ଯେଭଳି ଏକ ମାନ ନକ୍‌ସା କରାଯାଏ ଏବଂ ସେଥିରେ ପରବର୍ତ୍ତୀ କାଳରେ ଘର ତିଆରିର ସମସ୍ତ ବିଷୟ ଲିପିବଦ୍ଧ ଥାଏ, ସେହିଭଳି ପ୍ରତି କୋଷରେ ଥିବା କ୍ରୋମୋଜମ୍‌ରେ ଶରୀରର ସମସ୍ତ ଭବିଷ୍ୟତ ତଥ୍ୟ ଲିପିବଦ୍ଧ ଥାଏ । କ୍ରୋମୋଜମ୍‌ରେ ଦୁଇଟି ଅଦ୍ଭୁତ ପଦାର୍ଥ ଅଛନ୍ତି । ଗୋଟିକର ନାମ ଡି. ଏନ. ଏ. (DNA) ଏବଂ ଅନ୍ୟଟିର ନାମ ଆର. ଏନ୍. ଏ. (RNA) । ପ୍ରକୃତ ପକ୍ଷେ ଏହି ଡି. ଏନ୍. ଏ. ହିଁ ଜୀବନ ।

ଜୀବନର କେଉଁ ସମୟରେ ଶରୀର ସୃଷ୍ଟିରେ କି ପ୍ରକାର ପରିବର୍ତ୍ତନ ଆସିବ, ତାହା ଏଥିରେ ଲିପିବଦ୍ଧ ହୋଇଥାଏ । ପ୍ରାଣୀର ଶେଷ ଜୀବନ ପର୍ଯ୍ୟନ୍ତ ପ୍ରତି ମୁହୂର୍ତ୍ତରେ କୋଷରେ କି ପ୍ରକାର କାର୍ଯ୍ୟ ଚାଲିଛି, କି ପ୍ରକାର କାର୍ଯ୍ୟ ଚାଲିବ, ତାହା ଡି. ଏନ୍. ଏ. ଏବଂ ଆର ଏନ୍. ଏ. ଦ୍ୱାରା ହିଁ ନିର୍ଦ୍ଦିଷ୍ଟ ହୋଇଥାଏ ।




ମାତାପିତାଙ୍କ ଡିମ୍ବକୋଷ ଓ ଶୁକ୍ରକୀଟ ସଂଯୋଗ କାଳରେ ଯେଉଁ ପ୍ରଥମ କୋଷ ସୃଷ୍ଟି ହୁଏ, ତାହାହିଁ ଆପଣ—ପ୍ରଥମ ପୁରୁଷ ଏକ ବଚନ । ସେଥିରେ ହିଁ ତିଆରି ହୁଏ ଆପଣଙ୍କ ହୃତ୍‌ପିଣ୍ଡ, ବୃକ୍କ, ୨୫ ଫୁଟ ଲମ୍ବ ଅନ୍ତନଳୀ, ପାଞ୍ଚ ଲିଟର ରକ୍ତ ଏବଂ ୫ ଫୁଟ ୭ ଇଞ୍ଚ ଲମ୍ବ ଶରୀର । ଭବିଷ୍ୟତରେ ଆପଣ କେତେ ବୁଦ୍ଧିମାନ୍ ହେବେ, କେତେ ଦିନ ବଞ୍ଚିବେ, ସବୁର ଖବର ସେଇଠାରୁ ହିଁ ଆରମ୍ଭ ।

କିନ୍ତୁ ସବୁ କୋଷଠାରୁ ଡିମ୍ବକୋଷ ଏବଂ ଶୁକ୍ରକୀଟର କୋଷ ଭିନ୍ନ । ଏହି ଦୁଇକୋଷରେ ୨୩ ଯୋଡ଼ା କ୍ରୋମୋଜମ୍ ପରିବର୍ତ୍ତେ ୨୩ ଗୋଟି କ୍ରୋମୋଜମ୍ ଥାଆନ୍ତି । ଯାହାଫଳରେ ଡିମ୍ବକୋଷ ଓ ଶୁକ୍ରକୀଟର ସଂଯୋଗ ପରେ ଭବିଷ୍ୟତ ସନ୍ତାନ ପାଇଁ ଯେଉଁ ପ୍ରଥମ କୋଷ ସୃଷ୍ଟି ହୁଏ, ତାହା ୨୩ ଯୋଡ଼ା କ୍ରୋମୋଜମ୍ ବହନ କରେ ।

ଯେଉଁ ପ୍ରାଣୀ ସ୍ତ୍ରୀଲିଙ୍ଗ ବହନ କରନ୍ତି, ସେମାନଙ୍କର ପ୍ରତ୍ୟେକ କୋଷରେ କ୍ରୋମୋଜମ୍ 'X X' (ଏକ୍‌ସ-ଏକ୍‌ସ) ଏବଂ ଯେଉଁମାନେ ପୁରୁଷ ଲିଙ୍ଗ ବହନ କରନ୍ତି ସେମାନଙ୍କ ପ୍ରତ୍ୟେକ କୋଷରେ 'X Y'

(ଏକ୍ସ-ଓ୍ୱାଇ) କ୍ରୋମୋଜମ୍ ଥାଆନ୍ତି । ତେଣୁ ସ୍ତ୍ରୀ ଲୋକର ଡିମ୍ବ-କୋଷରେ ଏହି 'XY' କ୍ରୋମୋଜମର ଅଧା, ଅର୍ଥାତ୍ ଗୋଟିଏ ମାତ୍ର 'X' କ୍ରୋମୋଜମ୍ ଥାଏ । ସମ୍ଭୋଗ ସମୟରେ ନିର୍ଗତ ହେଉଥିବା ଧାତୁରେ ଯେଉଁ ୬୦୦ ନିୟୁତ ଶୁକ୍ରକୀଟ ଥାଆନ୍ତି, ସେଥିରୁ ଅର୍ଦ୍ଧେକ 'X' କ୍ରୋମୋଜମ୍ ଏବଂ ଅର୍ଦ୍ଧେକ 'Y' କ୍ରୋମୋଜମ୍ ବହନ କରନ୍ତି । ଗର୍ଭସ୍ଥଳର ଏକ ଆକସ୍ମିକ ପ୍ରକ୍ରିୟା ହୋଇଥିବା ଯୋଗୁ ଡିମ୍ବକୋଷ ସହିତ ଯଦି 'Y' କ୍ରୋମୋଜମ୍‌ଧାରୀ ଶୁକ୍ରକୀଟ ମିଳିତ ହୁଏ, ତେବେ ପୁତ୍ର ସନ୍ତାନ (XY) ଜାତ ହୁଏ ଏବଂ ଯଦି 'X' କ୍ରୋମୋଜମଧାରୀ ଶୁକ୍ରକୀଟ ମିଳିତ ହୁଏ, ତେବେ କନ୍ୟା ସନ୍ତାନ (XX) ଜନ୍ମ ହୋଇଥାଏ । ଫଳରେ ପୁତ୍ର କିମ୍ବା କନ୍ୟାସନ୍ତାନ ପାଇଁ ପିତା ହିଁ ଏକମାତ୍ର ଦାୟୀ । କାରଣ ମାତା 'X' ବ୍ୟତୀତ ଅନ୍ୟ କ୍ରୋମୋଜମ୍ କେବେ ଦେଇ ପାରିବେ ନାହିଁ । କୌଣସି କାରଣରୁ ପିତାଙ୍କର 'Y' କ୍ରୋମୋଜମ୍‌ବାହୀ ଶୁକ୍ରକୀଟ ଦୁର୍ବଳ ହୋଇପଡ଼ିଲେ କେବଳ କନ୍ୟାସନ୍ତାନ ଜାତ ହେବେ ।

ଏବେ ବୈଜ୍ଞାନିକ ଉପାୟରେ 'Y' କ୍ରୋମୋଜମ୍‌ବାହୀ ଶୁକ୍ରକୀଟଙ୍କୁ ଚିହ୍ନାଯାଇ ପାରୁଛି ଏବଂ କେତେକ ଉପାୟରେ ହର୍ମୋନ୍ ଓ ଆନୁଷଙ୍ଗିକ ଚିକିତ୍ସାରେ 'X' କିମ୍ବା 'Y' କ୍ରୋମୋଜମ୍‌ର ଗତିକୁ ବଦଳାଯାଇ ପାରୁଛି । ପୂର୍ବ ଅଧ୍ୟାୟରେ ଶୁକ୍ରକୀଟର ଗତି ସମ୍ପର୍କରେ ସମ୍ୟକ୍ ଧାରଣା ଦିଆଯାଇଛି । ତେଣୁ ଆବଶ୍ୟକତା ଅନୁସାରେ 'X' କିମ୍ବା 'Y' ଶୁକ୍ରକୀଟର ଗତି ବଦଳାଇ ପୁତ୍ର କିମ୍ବା କନ୍ୟା ସୃଷ୍ଟିରେ ସାହାଯ୍ୟ କରାଯାଇପାରେ ।

ଏକ ସାଧାରଣ ଉପାୟରେ ଘରୋଇ ଚିକିତ୍ସାରେ ଏହି ଶୁକ୍ରକୀଟମାନଙ୍କ ଗତି ବଦଳାଇ ଦିଆଯାଇ ପାରିବ । କନ୍ୟାସନ୍ତାନ ଚାହୁଁଥିବା ମାତାଙ୍କ ଯୋନିାଙ୍ଗରେ ଅମ୍ଳସ୍ନାନ (Acid Bath) ଏବଂ ପୁତ୍ର-ସନ୍ତାନ ଚାହୁଁଥିବା ମାତାଙ୍କର ଯୋନିାଙ୍ଗରେ କ୍ଷାର ସ୍ନାନ(Alkali Bath) କରାଇ ଇଚ୍ଛାନୁସାରେ ସନ୍ତାନ ଜାତ କରାଯାଇପାରେ । ଏହି ଅମ୍ଳ କିମ୍ବା କ୍ଷାର ଚିକିତ୍ସା ଡାକ୍ତରଙ୍କ ପରାମର୍ଶରେ ହିଁ କରାଯାଏ । ଯେକୌଣସି କ୍ଷାର କିମ୍ବା ଅମ୍ଳ ଯୋନିାଙ୍ଗରେ ଘା' ସୃଷ୍ଟି କରିପାରେ । ଏହି ଚିକିତ୍ସା ପୂର୍ବରୁ ସ୍ୱତନ୍ତ୍ର ପ୍ରାଥମିକ ପରୀକ୍ଷା ଆବଶ୍ୟକ ।

ସହବାସ ପୂର୍ବରୁ ଅମ୍ଳ ଡକଲ୍ଲା କରାଗଲେ ପୂ ର୍ବରେ 'Y' କ୍ରୋମୋଜମ୍‌ବାହୀ ଶୁକ୍ରକୀଟମାନେ ଦୁର୍ବଳ ହୋଇଯାଆନ୍ତି ଏବଂ 'X' କ୍ରୋମୋଜମ୍‌ବାହୀ ଶୁକ୍ରକୀଟ ଅଧିକ ଗତିଶୀଳ ହୁଅନ୍ତି । ଏହା ଫଳରେ କନ୍ୟାସନ୍ତାନ ସୃଷ୍ଟିର ସମ୍ଭାବନା ଉଜ୍ଜ୍ୱଳ ହୋଇଥାଏ । ସେହିଭଳି କ୍ଷାର ଡକଲ୍ଲାର 'X' କ୍ରୋମୋଜମ୍‌ବାହୀ ଶୁକ୍ରକୀଟମାନେ ଦୁର୍ବଳ ହୋଇଯାଇଥିବାରୁ 'Y' କ୍ରୋମୋଜମ୍‌ବାହୀ ଶୁକ୍ରକୀଟମାନେ ପୁତ୍ରସନ୍ତାନ ସୃଷ୍ଟି କରନ୍ତି । ଏଭଳି ଡକଲ୍ଲା ଜାଣିପାରିବାପରେ ଘରେ ଏକାନ୍ତରେ ଅଭ୍ୟାସ କରାଯାଇପାରେ । ବ୍ୟକ୍ତିଗତ ଅଭିଜ୍ଞତାରୁ ଏହାର ଅନେକ ସୁଫଳ ଲେଖକ ଜାଣିପାରିଛନ୍ତି ।

ଋତୁଚକ୍ରର ୧୦/୧୫ ଦିନ ବେଳକୁ ଡିମ୍ବକୋଷ ନିର୍ଗତ ହେଉ-ଥିବାରୁ ଏହା ଗର୍ଭାଧାନର ପ୍ରକୃଷ୍ଟ ସମୟ । ୧୨ ଠାରୁ ୧୪ ଦିନ ମଧ୍ୟରେ ସମ୍ଭୋଗ କଲେ କନ୍ୟାସନ୍ତାନ ଏବଂ ୧୫ ରୁ ୧୭ ଦିନ ମଧ୍ୟରେ ସମ୍ଭୋଗ କଲେ ପୁତ୍ରସନ୍ତାନ ଜାତ ହୁଏ ।

ଗର୍ଭ ସଞ୍ଚାରର ଚତୁର୍ଥ ମାସ ପରେ ଗର୍ଭାଶୟରୁ ଇଂଜେକ୍‌ସନ୍ ସାହାଯ୍ୟରେ ଜଳୀୟ ପଦାର୍ଥ ନେଇ ପରୀକ୍ଷା କରିବାଦ୍ୱାରା ସନ୍ତାନର ଲିଙ୍ଗ ନିରୂପଣ କରାଯାଇପାରୁଛି । ଏହି ପ୍ରକ୍ରିୟାକୁ ଡାକ୍ତରୀ ଭାଷାରେ ଆମ୍ନିଓଟିକ ଫ୍ଲୁଇଡ୍ ଆନାଲିସିସ ଫର୍ ସେକ୍‌ସ (Amniotic Fluid Analysis for sex) କୁହାଯାଉଛି । ଏଭଳି ଜାଣିପାରିଲା ପରେ ଆବଶ୍ୟକତା ଅନୁସାରେ ଗର୍ଭପାତ କରାଯାଇପାରେ ।

ଜନ ବିସ୍ଫୋରଣ ହେତୁ ପରିବର୍ତ୍ତିତ ପରିସ୍ଥିତିରେ ବଂଶବୃଦ୍ଧି ଏକପ୍ରକାର ସୀମିତ କରିବାକୁ ପଡ଼ୁଛି । ଏଭଳି ପରିସ୍ଥିତିରେ ଇଚ୍ଛା ଅନୁସାରେ ପୁଅଟିଏ କମ୍ବା ଝିଅଟିଏ ହେବା ବ୍ୟକ୍ତିଗତ ଭାବରେ ସ୍ୱାମୀ ସ୍ତ୍ରୀଙ୍କୁ ସାମୟିକ ସୁଖ ଦେଇପାରେ । କିନ୍ତୁ ପରବର୍ତ୍ତୀ କାଳରେ ଏହା ସମାଜରେ ବିଷମତା ମଧ୍ୟ ସୃଷ୍ଟି କରିପାରେ । କଥାଟାକୁ ଟିକେ ବୁଝାଇ କହିଲେ—ବହୁ ଲୋକ ଯଦି ଖାଲି ପୁଅ ଚାହାନ୍ତି ତା'ହେଲେ ବିବାହ ପାଇଁ କନିଆ ମିଳିବେ କେଉଁଠୁ ? ପରବର୍ତ୍ତୀ ସୃଷ୍ଟି ଲୋପ ପାଇଯିବ ନାହିଁ ତ ?

# ମା' ପେଟରେ ଛୁଆ

ଜୀବନ କେଉଁ ଏକ ଅଜଣା ମୁହୂର୍ତ୍ତରେ ସୃଷ୍ଟି ହୁଏ । ଠିକ୍ ସେହି ସମୟକୁ ଅନୁଭବ କରିହୁଏ ନାହିଁ ଏବଂ ଜୀବନ ସୃଷ୍ଟିର ସନ୍ଧାନରେ ଆନନ୍ଦିତ ହୋଇ ହୁଏ ନାହିଁ । ଅଜଣା ଶୁକ୍ରକୀଟଟିଏ ଲାଞ୍ଜ ହଲାଇ ଯେତେବେଳେ ପକ୍ୱ ଡିମ୍ବକୋଷ ମଧ୍ୟରେ ସମ୍ପୂର୍ଣ୍ଣ ପ୍ରବେଶ କରିଯାଏ, ସେତିକିବେଳେ ହିଁ ଜୀବନ ସୃଷ୍ଟି ହୁଏ । ଡିମ୍ବକୋଷଟିରେ ଶୁକ୍ରକୀଟ ପ୍ରବେଶ ପରେ ଏକ ଅହେତୁକ ଶିହରଣ ବିଦ୍ୟୁତ୍ ବେଗରେ ଖେଳିଯାଏ ।

ଏହି ସଂଯୋଗ ସମୟରେ ଖାଲି ମଣିଷଟିଏ ସୃଷ୍ଟି ହୁଏ ନାହିଁ, ତାହାର ମଣିଷପଣିଆ ଏବଂ ଲିଙ୍ଗ ମଧ୍ୟ ସ୍ଥିର ହୋଇଥାଏ । ଶୁକ୍ରକୀଟ ଏବଂ ଡିମ୍ବାଣୁର ସଂଯୋଗରେ ସେ ଉଭୟ ପିତାମାତାଙ୍କର ଶାରୀରିକ ତଥା ମାନସିକ ଗୁଣ ସମେତ ପୂର୍ବପୁରୁଷମାନଙ୍କର ଅନେକ ଗୁଣ ମଧ୍ୟ ବହନ କରିଥାଏ ।

**ପ୍ରଥମ ମାସ : ନୂତନ ଜୀବନ**

ପ୍ରକୃତିର ବିଚିତ୍ର ଲୀଳା ! ଏକ ଅଜଣାରୁ ମଣିଷର ପ୍ରତିଚ୍ଛବି । ମାସକରେ ଆମ୍ଭେମାନେ ଗୋଟିଏ ସାଧାରଣ ଡିମ୍ବରୁ ଏକ କ୍ଷୁଦ୍ର ଭ୍ରୂଣରେ ପରିଣତ ହେଉ । ଏହି ଭ୍ରୂଣ ଗୋଟିଏ ସେଣ୍ଟିମିଟରର ଦୁଇ ଭାଗରୁ ଭାଗେ ଲମ୍ବ । ସାଧାରଣ ଡିମ୍ବଠାରୁ ଏହାର ଓଜନ ୧୦ ହଜାର ଗୁଣ ବେଶି ଏବଂ ଲମ୍ବ ୫୦ ଗୁଣ ଅଧିକ । ଏହି ଭ୍ରୂଣରେ କୋଷଗୁଡ଼ିକ ପ୍ରଥମେ ଦୁଇ, ଦୁଇରୁ ଚାରି, ଚାରିରୁ ଆଠ, ଆଠରୁ ଷୋଳ—ଏହିପରି ଭାବରେ ବୃଦ୍ଧି ପାଆନ୍ତି ।

ମାସ ଶେଷ ବେଳକୁ ଏଥିରେ ଗୋଟିଏ ମୁଣ୍ଡ, ଶରୀର ଏବଂ ଗୋଟିଏ ଲାଙ୍ଗୁଡ଼ ଥାଏ । ଏହି ସମୟରେ ହୃତ୍‌ପିଣ୍ଡର ସ୍ପନ୍ଦନ ଥାଏ, ରକ୍ତ ସଞ୍ଚାଳିତ ହେଉଥାଏ । ହାତ, ଗୋଡ଼, କାନ, ଆଖି, ପାକସ୍ଥଳୀ ଓ ମସ୍ତିଷ୍କ ତିଆରି ଆରମ୍ଭ ହେଉଥାଏ । ଏତିକିବେଳେ ଖାଦ୍ୟର ଆବଶ୍ୟକତା ବହୁ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ଏହି ଭ୍ରୂଣ ସ୍ୱରୂପଟେ ଏକ କୋଷ

ଆବରଣ ସୃଷ୍ଟି ହୁଏ । ଏହି କୋଷଗୁଡ଼ିକ ମା'ର ଜରାୟୁରେ ଲାଗିରହି ଜରାୟୁ କୋଷକୁ ଖାଇଯାଆନ୍ତି । ମା'ର ଜରାୟୁ ନିଜକୁ ରକ୍ଷା କରିବା ପାଇଁ ଏବଂ ଭ୍ରୂଣକୁ ଖାଦ୍ୟ ଯୋଗାଇବା ପାଇଁ ବହୁ କୋଷ ସୃଷ୍ଟି କରେ । ଏହାକୁ ଆମେ କହୁ 'ଫୁଲ' । ଡାକ୍ତରୀ ଭାଷାରେ କହନ୍ତି ପ୍ଲାସେଣ୍ଟା (Placenta) । ଏହି ଫୁଲ ଜରାୟୁ ଦେହରେ ଲାଗିରହି ବର୍ଦ୍ଧମାନ ଭ୍ରୂଣକୁ ଖାଦ୍ୟ ଯୋଗାଇବାରେ ସହାୟକ ହୁଏ । ମା'ର ରକ୍ତ ଏହି ଭ୍ରୂଣ ପାଇଁ ଖାଦ୍ୟ, ଅମ୍ଳଜାନ ଏବଂ ଜଳ ଫୁଲକୁ ବହିନିଏ । ଫୁଲ କୋଷରେ ସେଗୁଡ଼ିକ ଛାଣି ହୋଇ ଭ୍ରୂଣର ନାହି ବାଟେ ଭ୍ରୂଣକୁ ଖାଦ୍ୟ ଯୋଗାନ୍ତି । ଭ୍ରୂଣ ଏବଂ ଫୁଲ ଲାଗି ଲାଗି ରହନ୍ତି ନାହିଁ । ଭ୍ରୂଣର ନାହିଠାରୁ ଶିରା ଓ ଧମନୀ ଦଉଡ଼ି ଭଳି ଲମ୍ବିଯାଇ ଫୁଲ ସହିତ ସଂଯୁକ୍ତ ହୋଇଥାଆନ୍ତି । ଏହି ଖାଦ୍ୟ ଭ୍ରୂଣ ଗ୍ରହଣ କରି ସାରିବା ପରେ ଏହାର ଶରୀରର ଦୂଷିତ ପଦାର୍ଥ ନାହି ବାଟ ଦେଇ ପୁଣି ଫୁଲକୁ ଆସେ ଏବଂ ଫୁଲରୁ ମା'ର ରକ୍ତରେ ମିଶି ମା'ର ଫୁସ୍‌ଫୁସ୍ ଓ ବୃକ୍କ ଦେଇ ବାହାରିଯାଏ । କୌଣସି ସମୟରେ ମା'ର ରକ୍ତ ଭ୍ରୂଣର ରକ୍ତବାହୀ ନାଳୀରେ ସିଧା ସିଧା ସଞ୍ଚାରିତ ହୁଏ ନାହିଁ । ଏହା ସବୁବେଳେ ଫୁଲ ମାଧ୍ୟମ ଦେଇ ଭ୍ରୂଣ ଉପଯୋଗୀ ହୋଇ ଆସିଥାଏ ।

ଏହି ଭ୍ରୂଣ ବଢ଼ୁଥିଲା ବେଳେ ପ୍ରଥମେ ନିଦା ଥାଏ । କିନ୍ତୁ ୧୫ ଦିନ ପରେ ଏହା ଇଂରାଜୀ ସଂଖ୍ୟା ୮ (8) ଭଳି ହୋଇଯାଏ ଏବଂ ତା'ର ତଳ ଅଂଶରେ ପାଣି ଜମିଯାଏ । ଏହି ପାଣି ପରେ ସାରା ଭ୍ରୂଣକୁ ଘେରି ରହେ । ଏହାଦ୍ୱାରା ମା' ପେଟରେ କୌଣସି ଆଘାତ ଲାଗିଲେ ମଧ୍ୟ ଭ୍ରୂଣର କୌଣସି କ୍ଷତି ହୁଏ ନାହିଁ । ୧୭ ଦିନ ବେଳକୁ ଭ୍ରୂଣରେ ରକ୍ତର ଦ୍ୱୀପସବୁ ସୃଷ୍ଟି ହୁଏ ଏବଂ ଗୋଟିଏ ସରୁନଳୀ ବାହାରେ, ଯେଉଁଥିରୁ ପରବର୍ତ୍ତୀ କାଳରେ ହୃତପିଣ୍ଡ ତିଆରି ହୁଏ । ଏହି ସରୁନଳୀ ପରବର୍ତ୍ତୀ କାଳ ପର୍ଯ୍ୟନ୍ତ କାମ କରିବାକୁ ଅପେକ୍ଷା ନକରି ସାଙ୍ଗେ ସାଙ୍ଗେ ସଙ୍କୁଚିତ-ପ୍ରସାରିତ ହୋଇ ହୃତ୍‌ପିଣ୍ଡ କ୍ରିୟା ଆରମ୍ଭ କରିଦିଏ । ଏହି କ୍ରିୟା ଆରମ୍ଭ ହେଲା ପରେ ଭ୍ରୂଣ ମଧ୍ୟରେ ରକ୍ତ ସଞ୍ଚାଳନ ଆରମ୍ଭ ହୁଏ । ଏହି ହୃତ୍‌ପିଣ୍ଡ କ୍ରିୟା ସ୍ୱୟଂକ୍ରିୟ । ମା'ର ହୃତ୍‌ପିଣ୍ଡ ଓ ଶ୍ୱାସକ୍ରିୟା ସହିତ ଏହାର କୌଣସି ସଂପର୍କ ନାହିଁ । ଠିକ୍ ସେହି ସମୟରେ ଆଉ ଗୋଟିଏ ନଳୀ

ସୃଷ୍ଟି ହୁଏ, ଯେଉଁଥିରୁ ପରବର୍ତ୍ତୀ କାଳରେ ମସ୍ତିଷ୍କ ତିଆରି ହୁଏ । ବସ୍ତୁତଃ ଚତୁର୍ଥ ସପ୍ତାହର ଶେଷ ବେଳକୁ ସ୍ନାୟୁକୋଷ ସୃଷ୍ଟି ଆରମ୍ଭ ହୋଇଯାଇଥାଏ । ଏହି ଚତୁର୍ଥ ସପ୍ତାହର ଶେଷ ବେଳକୁ ପାକସ୍ଥଳୀ, ଅନ୍ତନଳୀ ଏବଂ ପାଟି ମଧ୍ୟ ସୃଷ୍ଟି ହୋଇଥାଏ । ୨୪ ଦିନ ବେଳକୁ ଭ୍ରୂଣ ମଧ୍ୟରେ ଫୁସ୍‌ଫୁସ୍, ଯକୃତ ଏବଂ ବୃକ୍କ ସୃଷ୍ଟି ମଧ୍ୟ ଆରମ୍ଭ ହୁଏ ।

## ଦ୍ୱିତୀୟ ମାସ : ମଣିଷର ମୁହଁ

ବେଙ୍ଗଫୁଲରୁ ମଣିଷ । ପ୍ରକୃତରେ ବେଙ୍ଗଫୁଲରୁ ମଣିଷ ହୁଏ ନାହିଁ କିନ୍ତୁ ପ୍ରଥମ ମାସର ଭ୍ରୂଣ ଦେଖିବାକୁ ଠିକ୍ ବେଙ୍ଗଫୁଲ ଭଳି—ଗୋଟିଏ ମୁଣ୍ଡ, ଶରୀର ଏବଂ ଲାଞ୍ଜ । କିନ୍ତୁ ଦ୍ୱିତୀୟ ମାସ ଶେଷ ବେଳକୁ ମଣିଷ ଶରୀରର ବହୁ ଅଂଶ ସୃଷ୍ଟି ହୋଇଯାଏ । ଏହି ସମୟରେ ଭ୍ରୂଣର ଲମ୍ବ ୬ ଗୁଣ ହୋଇଯାଏ—ପ୍ରାୟ ଦେଢ଼ ଇଞ୍ଚ ଏବଂ ଓଜନ ପୁଣି ୫୦୦ ଗୁଣ ବଢ଼ିଯାଏ । ନମ ତଳେ ହାଡ଼, ମାଂସପେଶୀ ସୃଷ୍ଟି ହୁଏ । ଏହି ସମୟରେ ମୁହଁ ଏବଂ ବେକ ସୃଷ୍ଟି ହୁଏ । ମାତ୍ର ତାହା ଖୁବ୍ କଦାକାର ଦେଖାଯାଏ । ନାକ ଆରମ୍ଭ ହୁଏ । ଆଖି ଦୁଇଟି ଆଗକୁ ଘୁଞ୍ଚିଆସେ । ମାସ ଶେଷ ବେଳକୁ ଆଖିପତା ତିଆରି ହୁଏ । ପତା ତିଆରି ହେଲାପରେ ଆଖି ବୁଜିହୋଇ ରହେ । ଏହି ସମୟରେ ଭ୍ରୂଣର କପାଳଟି ଅତିଶୟ ବଡ଼ ଦେଖାଯାଏ । କାରଣ ଏହା ଭିତରେ ମସ୍ତିଷ୍କ ସୃଷ୍ଟି ହେଉଥାଏ । ହାତଗୋଡ଼ ମଧ୍ୟ ଆରମ୍ଭ ହୁଏ । ପାଞ୍ଚ ସପ୍ତାହ ବେଳକୁ ଭ୍ରୂଣର ବେଶ୍ କିଛି କୋଷ ଅଭିବୃଦ୍ଧି ହୋଇସାରିଥାଏ । ଉପାସ୍ଥି ସୃଷ୍ଟି ହୁଏ ଏବଂ ପରବର୍ତ୍ତୀ କାଳରେ ଏହି ଉପାସ୍ଥି ଉପରେ ଅସ୍ଥି ତିଆରି ହୋଇ ମଣିଷର ଢାଞ୍ଚା ସୃଷ୍ଟି ହୁଏ ।

## ତୃତୀୟ ମାସ : ଲିଙ୍ଗ ନିର୍ଦ୍ଧାରଣ

ତୃତୀୟ ମାସର ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା ଲିଙ୍ଗ ନିରୂପଣ । ଦ୍ୱିତୀୟ ମାସର ପ୍ରଥମ ସପ୍ତାହରେ ସହଜରେ ଲିଙ୍ଗ ନିରୂପଣ କରିହୁଏ ନାହିଁ, କିନ୍ତୁ ଶେଷ ସପ୍ତାହ ବେଳକୁ ଲିଙ୍ଗ ସୃଷ୍ଟି ଭଲଭାବରେ ଜଣା ପଡ଼ିଯାଇଥାଏ । ପ୍ରଥମ ଅବସ୍ଥାରେ ଉଭୟ ଲିଙ୍ଗ ଭ୍ରୂଣଠାରେ ସୃଷ୍ଟି ହୋଇଥାଏ । କିନ୍ତୁ ପରବର୍ତ୍ତୀ କାଳରେ ଏକ ନିର୍ଦ୍ଦିଷ୍ଟ ଲିଙ୍ଗକୁ ବୃଦ୍ଧି କରାଇ ପ୍ରକୃତ ପୁଅ କିମ୍ବା ଝିଅ ସୃଷ୍ଟି କରିଥାଏ ।

ତୃତୀୟ ମାସରେ ସନ୍ତାନର ପାଟିରେ ସ୍ୱାଦ ପାଇଁ ଆବଶ୍ୟକୀୟ ମାଡ଼ି ଓ ସ୍ୱରଯନ୍ତ୍ର ସୃଷ୍ଟି ହୋଇଥାଏ, କିନ୍ତୁ ଏହି ସମୟରେ ଶିଶୁ ଏକ ଜଳମୟ ଆବରଣ ମଧ୍ୟରେ ରହୁଥିବାରୁ ସ୍ୱର ସୃଷ୍ଟି ସମ୍ଭବ ହୁଏ ନାହିଁ। କାରଣ ଶ୍ୱାସକ୍ରିୟା କମ୍ବା ସ୍ୱର ସୃଷ୍ଟି ହେଲେ ନିଶ୍ୱାସ ସାହାଯ୍ୟରେ ପବନ ଏବଂ ଜଳୀୟ ଅଂଶ ଶିଶୁର ଫୁସ୍‌ଫୁସ୍‌ରେ ପ୍ରବେଶ କରି ତାହାଙ୍କୁ ମରଣ ମୁଖରେ ପକାଇଦିଅନ୍ତା। ଏଇ ସମୟରେ ଶିଶୁ ପରିସ୍ରା କରେ। ଏଇ ପରିସ୍ରା ଜଳୀୟ ଆବରଣ ମଧ୍ୟରେ ମିଶିଯାଏ। ତିନିମାସ ପରେ ଶିଶୁ ବୃହତ୍ତର ମାନବ ସମାଜର ଏକ ଅଂଶ ହୋଇଯାଏ। କେବଳ ଯେ ଏହାର ଶରୀରରେ ସବୁ ଅଙ୍ଗ ସୃଷ୍ଟି ହୋଇଥାଏ ତାହା ନୁହେଁ, ତାହା ସହିତ ଶିଶୁର ମାଂସପେଶୀ, ହସ୍ତପଦ, ଏଭଳିକି ଆଙ୍ଗୁଳି ମଧ୍ୟ ସୃଷ୍ଟି ହୋଇଥାଏ।

## ଚତୁର୍ଥ ମାସ : ପେଟରେ ପିଲା ବୁଲିବା

ଚତୁର୍ଥ ମାସ ବେଳକୁ ଶିଶୁ ଜୋର୍‌ରେ ହାତ ଗୋଡ଼ ହଲାଇ ମା' ପେଟରେ ଖେଳେ। ଏଇଭଳି ଅଙ୍ଗଚାଳନା ମା'ଙ୍କୁ ଚଢ଼େଇର ଡେଣା ହଲାଇଲା ଭଳି ଅନୁଭୂତ ହୁଏ। ଗର୍ଭରେ ଯେ ଏକ ଜୀବନ ସୃଷ୍ଟି ହୋଇଛି ଏଇ ସୁସମ୍ବାଦ ମା' ଜାଣିପାରେ। ସେତେବେଳକୁ ଶିଶୁର ଲମ୍ବ ୮ ଇଞ୍ଚ। ଏହା ପ୍ରାୟ ଜନ୍ମ ହେଲାବେଳର ଲମ୍ବାର ଅଧା।

## ପଞ୍ଚମ ମାସ : ନଖ, ବାଳ, ଚମ

ପଞ୍ଚମ ମାସ ବେଳକୁ ଛୁଆର ଚମ ମୋଟ୍ ମୋଟ ହୋଇଥାଏ। ଏହାର ଲମ୍ବ ପ୍ରାୟ ୩୦ ସେଣ୍ଟିମିଟର, ଓଜନ ୫୦୦ ଗ୍ରାମ। ଏହି ସମୟରେ ଯଦି କୌଣସି କାରଣରୁ ଗର୍ଭପାତ ହୁଏ, ତେବେ ଶିଶୁଟି କିଛି ସମୟ ବଞ୍ଚି ରହିପାରେ। ବାହାରେ ନିଶ୍ୱାସ ନେଇପାରେ କମ୍ବା କାନ୍ଦିପାରେ। ଚର୍ମରେ ଝାଳଗ୍ରନ୍ଥି ସୃଷ୍ଟି ହୋଇ ଏକପ୍ରକାର ରସ ନିର୍ଗତ କରନ୍ତି, ଯାହା ଛେନା ଭଳି ସାରା ଶରୀରରେ ବୋଳି ହୋଇ ରହିଥାଏ। ନଖ, ବାଳ ମଧ୍ୟ ଏହି ସମୟରେ ସୃଷ୍ଟି ହୁଏ।




## ଷଷ୍ଠ ମାସ : ଅନ୍ଧାରକୁ ଚାହୁଁଥିବା ଆଖି

ଛଅମାସ ବେଳକୁ ବନ୍ଦ ଆଖିପତା ଖୋଲିଯାଏ ଏବଂ ଭଲ ଭାବରେ ତିଆରି ହୋଇଥିବା ଆଖି ମେଲା ହୋଇଯାଏ । ଆଖି ପତାରେ ବାଳ ଉଠିଥାଏ । ସାତମାସ ବେଳକୁ ଆଖି ଆଲୁଅ ବାରିପାରେ । ଏହି ସମୟରେ ଶିଶୁଟି ଜନ୍ମ ହେଲେ ଏହା ନିଶ୍ୱାସ ନିଏ, କାନ୍ଦେ ଏବଂ କେତେଦିନ ଧରି ବଞ୍ଚି ରହିପାରେ । ବେଳେ ବେଳେ ଶୀତତାପନିୟନ୍ତ୍ରଣ 'ଇନ୍‌କୁବେଟର' ଭିତରେ ରଖି ଯତ୍ନ ନେଲେ ଏହା ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷା ପାଇଯାଇପାରେ ।

## ସପ୍ତମ ମାସ : ସୁପ୍ତ ମସ୍ତିଷ୍କ

ସପ୍ତମ ମାସ ବେଳକୁ ଶିଶୁର ଲମ୍ବ ପ୍ରାୟ ୪୦ ସେଣ୍ଟିମିଟର, ଓଜନ ଦେଢ଼ କେଜି । ଏହି ସମୟରେ ମସ୍ତିଷ୍କର ସମ୍ପୂର୍ଣ୍ଣ ବିକାଶ,

ବଢ଼ିଥାଏ । ସ୍ନାୟୁଗୁଡ଼ିକ ସଫଳତାର ସହ କାର୍ଯ୍ୟ କରିବାକୁ ସକ୍ଷମ ହୁଅନ୍ତି । ମା’ ପେଟରେ ହାତର ମୃଦୁ ସ୍ପର୍ଶ କଲେ ମଧ୍ୟ ତାହା ଶିଶୁ ଜାଣିପାରେ । ଏହି ସମୟରେ ଜନ୍ମ ହେଲେ ଶିଶୁଟିର ବଞ୍ଚିବାର ସମ୍ଭାବନା ଉଜ୍ଜ୍ୱଳ ।

## ଅଷ୍ଟମ/ନବମ ମାସ : ସୌନ୍ଦର୍ଯ୍ୟ

ସ୍ଥପତିଟିଏ ମୂର୍ତ୍ତି ଗଢ଼ିସାରିଲା ପରେ ଯେଉଁଭଳି ଶେଷ ବେଳକୁ ସୌନ୍ଦର୍ଯ୍ୟର ବିକାଶ ପାଇଁ ନିହାଣ ମୁଗୁରରେ ତା’ର ଅଙ୍ଗ ପ୍ରସାଧନ କରେ, ସେହିଭଳି ପ୍ରକୃତି ଶିଶୁର ଶରୀରରେ ସୌନ୍ଦର୍ଯ୍ୟର ଶେଷ ପ୍ରଲେପ ଲଗାଇଥାଏ । ଏହି ସମୟରେ ଚମତଳେ ଚର୍ବି ସୃଷ୍ଟି ହୋଇ ଏକଦା କଦାକାର ଶରୀରକୁ ସୁନ୍ଦର କରିଦିଏ । ଚମର ଅସୁନ୍ଦର ନାଲିରଙ୍ଗ ଦୁଧ-ଅଳତା ରଙ୍ଗରେ ପରିଣତ ହୁଏ । ଶିଶୁର ଚାହାଣି ଏକ ବୃଦ୍ଧର ମୁହଁ ଠାଣିଠାରୁ ପୃଥକ୍ ହୋଇ ଶିଶୁସୁଲଭ କୋମଳତାରେ ପରିଣତ ହୁଏ ।

ନଅ ମାସ ଦଶ ଦିନ ବା ୨୮୦ ଦିନ ପରେ ଶରୀରରେ ପରିପୁଷ୍ଟ ଶିଶୁ ମାତୃଗର୍ଭରୁ ବାହାରନ୍ତି ଆଉ ୨୫ ଭାଗଙ୍କ ପାଇଁ ଏପଟେ ୧୫ ଦିନ, ସେପଟେ ୧୫ ଦିନ କମ୍ ବେଶି ହୋଇପାରେ । ମାତୃଗର୍ଭରୁ ବାହାରିଲା ପରେ ହିଁ ଶିଶୁର ସ୍ୱାଧୀନ ଶ୍ୱାସକ୍ରିୟା ଆରମ୍ଭ ହୁଏ । ଏହା ପୂର୍ବରୁ ଶିଶୁର ଫୁସ୍‌ଫୁସ୍ କୌଣସି କାର୍ଯ୍ୟ କରୁନଥାଏ । ତେଣୁ ଶିଶୁ ଜନ୍ମ-ହୋଇ କୁଆଁ କୁଆଁ କରିବା ମାତ୍ରେ ହିଁ ସ୍ୱାଧୀନ ଶ୍ୱାସକ୍ରିୟା ଆରମ୍ଭ ହୋଇଥାଏ । ଜନ୍ମହେଲା ପରେ କାନ୍ଦିବାଟା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆମ ସମସ୍ତଙ୍କ ପାଇଁ ଏହା ଏକ ଅଭୁଲା କାହାଣୀ, ଯାହାକୁ ଆମେ ସମସ୍ତେ ଭୁଲିଯାଇଛେ ।

●

# ଆମକୁ ରୋଗ କାହିଁକି ହୁଏ ?

ସେଦିନ ସପ୍ତମ ଶ୍ରେଣୀରେ ସ୍ୱାସ୍ଥ୍ୟଶିକ୍ଷା କ୍ଲାସରେ ରୋଲ୍‌କଲ୍ ସରିଗଲା ପରେ ଶିକ୍ଷକ ପଚାରିଲେ—ଗୋପାଳ,ସୀତା ଆଉ ଅଶୋକ ଆସି ନାହାନ୍ତି କାହିଁକି ? ବିନୋଦଙ୍କ ଘର ଗୋପାଳଙ୍କ ଗାଁରେ । ସେ ଦୁହେଁ ଦୈନିକ ଏକାଠି ସ୍କୁଲ୍‌କୁ ଆସନ୍ତି । ବିନୋଦ ଉଠିପଡ଼ି କହିଲା ଗୋପାଳକୁ ଜ୍ୱର ! ସେ ମକର ମେଲାକୁ ଯାଇଥିଲା । ସେଠାରେ ଖାଇବା ପିଇବା କଣ ଖରାପ କଲା । ରାତି ଅନିଦ୍ରା ହୋଇ ନାଟ ଦେଖିଲା । ସେହିଦିନ ପରଠାରୁ ତାକୁ ଜ୍ୱର ଝାଡ଼ା ଲାଗି ରହିଛି । ଆଜି ତାକୁ ଜ୍ୱର ଥିଲା । ଚାଳିଶି ଡିଗ୍ରୀ ସେଣ୍ଟିଗ୍ରେଡ୍ । ତାକୁ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଡାକ୍ତର ଚିକିତ୍ସା କରୁଛନ୍ତି ।

ସୀତା ସମ୍ବନ୍ଧରେ କୁସୁମ କହିଲା, ଜନ୍ମରୁ ସୀତାର ହୃତପିଣ୍ଡରେ କଣ ରୋଗ ଅଛି । ବେଳେବେଳେ ତାର ଛାତି ଦୁକୁଦୁକ ପିଟି ହୁଏ । ଦଉଡ଼ିଗଲେ ଧଇଁସଇଁ ହୋଇଯାଏ । କାଶ, କଫ ଲାଗି ରୁହେ । ନିଶ୍ୱାସ ମାରିବାକୁ କଷ୍ଟହୁଏ । ପରେ ଆଙ୍ଗୁଠି ନଖ ସବୁ ଫୁଲିଯାଇଛି । ଓଠ ନୀଳବର୍ଣ୍ଣ ହୋଇଯାଇଛି । ଡାକ୍ତର ତାକୁ ବିଶ୍ରାମ ନେବାକୁ କହିଛନ୍ତି ।

ଅଶୋକ ବିଷୟରେ ବିଜୟ କହିଲା, ଅଶୋକ ହାଟକୁ ସଉଦା ପାଇଁ ଯାଇଥିଲା । ସାଇକେଲରୁ ପଡ଼ି ତାର ହାତ ଭାଙ୍ଗିଯାଇଛି । ଡାକ୍ତର ହାତ ପ୍ଲାଷ୍ଟର କରି ବିଶ୍ରାମ ନେବାକୁ କହିଛନ୍ତି ।

ତା'ପରେ ଶିକ୍ଷକ ସ୍ୱାସ୍ଥ୍ୟଶିକ୍ଷା ସମ୍ବନ୍ଧରେ ପଢ଼ା ଆରମ୍ଭ କଲେ । ସେ କହିଲେ ରୋଗହେବା ବଡ଼ କଥା ନୁହେଁ । ପ୍ରତିଦିନ ନିୟୁତ ନିୟୁତ ଜୀବାଣୁ ଓ ଭୂତାଣୁ ଜଣେ ସୁସ୍ଥ ମଣିଷ ଦେହରେ ପ୍ରବେଶ କରନ୍ତି । ସେମାନେ ସାଙ୍ଘାତିକ ରୋଗ ସୃଷ୍ଟି କରିପାରନ୍ତି । ପ୍ରତି ସଂକ୍ରାମକ ରୋଗରେ ଅଲଗା ଅଲଗା ଜୀବାଣୁ ଓ ଭୂତାଣୁ । କାଶ, ସର୍ଦ୍ଦି, ଟାଇଫଏଡ୍, ହଇଜା, ମିଳିମିଳା, ହାଡ଼ଫୁଟି, ହଳଦିଆ କାମଳ, ଯକ୍ଷ୍ମା, କୁଷ୍ଠରୋଗ, ଏମିତି କେତେ କେତେ ରୋଗ ଓ ତାର ଜୀବାଣୁ ଏକ ସମୟରେ

ଶରୀର ମଧ୍ୟରେ ପଶି ପାରନ୍ତି । ସେମାନେ ନିଶ୍ୱାସ ପ୍ରଶ୍ୱାସରେ ପଶି ପାରନ୍ତି, ଖାଦ୍ୟ ପାନୀୟ ଦ୍ୱାରା ପଶି ପାରନ୍ତି କିମ୍ବା ଦେହ ଖଣ୍ଡିଆ ଖାବରା ହେଲେ ଚର୍ମଦେଇ ଭିତରେ ପଶି ପାରନ୍ତି । ସେଥିରୁ ଅନେକ ଜୀବାଣୁ ନାକରେ, ପାଟିରେ, ତଣ୍ଟିରେ, ଅନ୍ତନଳୀରେ ପବୃଦ୍ଧିକରି ବସା ବାନ୍ଧି ରହିପାରନ୍ତି । କିନ୍ତୁ ସବୁଠୁ ଆଶ୍ଚର୍ଯ୍ୟ କଥା ତୁମେ ସୁସ୍ଥ ଅଛ । ବହୁ ମଣିଷ ସବୁବେଳେ ସୁସ୍ଥ ରହୁଛନ୍ତି । ଏଭଳି ଲୋକ ଅଛନ୍ତି ତାଙ୍କ ଜୀବନର ସତୁରି ବର୍ଷ ମଧ୍ୟରେ ମଧ୍ୟ କୌଣସି ଡାକ୍ତର ତାଙ୍କୁ କେବେ ଚିକିତ୍ସା କରିନାହାନ୍ତି ।

ଏଇ ଘନଅଜା କଥା । ୧୫ ଦିନ ତଳେ ସକାଳୁ ସକାଳୁ ନିତ୍ୟକର୍ମ ସାରି ଅଜା ରାସ୍ତା ଉପରକୁ ଉଠି ଆସୁଛନ୍ତି । କୁଆଡ଼ୁ, ଭିତରେ ଲୋଳଣ୍ଟି ଟ୍ରକ ତାଙ୍କ ଉପରେ ଚଢ଼ି ଚାଲିଗଲା । ସତୁରି ବର୍ଷ ବୟସ ମଧ୍ୟରେ ଘନ ଅଜା କେବେ ରୋଗୀହେବା କେହି ଦେଖିନାହାନ୍ତି । ଡେଙ୍ଗା, ଗୋରା ଚେହେରା, ବାଘୁଆ ନିଶ, ଲମ୍ବା ଚଉଡ଼ା ଗ୍ରୁଣ୍ଡି । ତାଙ୍କ ସ୍ତ୍ରୀ ପଦ୍ମା ମା ଆଈ କହନ୍ତି ବାହାଘର ୫୦ ବର୍ଷ ଭିତରେ ଥରେ ତାଙ୍କୁ ୨।୩ ଦିନ ପାଇଁ ପାଣିଆ ଝାଡ଼ା ହୋଇଥିଲା । ତାହା ପୁଣି ୩୦ ବର୍ଷ ତଳର କଥା ।

କିନ୍ତୁ ଦୁର୍ଘଟଣା ପରେ ତ ଶବ ବ୍ୟବଚ୍ଛେଦ ହେବା କଥା ।

ଶବ କଟାହେଲା । ଶବ କଟାହୋଇ ସାରିଲା ପରେ ଡାକ୍ତର-ମାନେ ଭିତରର ବିଭିନ୍ନ ଅଙ୍ଗ ଠିକଣାଖି ପରୀକ୍ଷା କଲେ । ସେଥିରେ ଡାକ୍ତର ଆଶ୍ଚର୍ଯ୍ୟ ହେଲେ । ଏ ଲୋକ ଏତେଦିନ ବଞ୍ଚିଥିଲା କିପରି ? ଘନଅଜାଙ୍କ ଫୁସ୍‌ଫୁସ୍‌ରେ ଯକ୍ଷ୍ମାରୋଗ ହୋଇ ଆପେ ଆପେ ଶୁଖି ଯାଇଥିଲା । ଉଚ୍ଚ ରକ୍ତଚାପ ଯୋଗୁ ତାଙ୍କ ହୃତପିଣ୍ଡର ଆକୃତି ଦୁଇ ଗୁଣ ବଢ଼ିଯାଇଥିଲା । ସେ ମଝିରେ ମଝିରେ ଟିକେ ଟିକେ ଦେଶୀ ମଦ ପିଉ-ଥିବାରୁ ତାଙ୍କର ଯକୃତରେ ସିରୋସିସ୍ ରୋଗ ହୋଇଯାଇଥିଲା ଏବଂ ଉଚ୍ଚ ରକ୍ତଚାପ ଯୋଗୁ ତାଙ୍କର ବୃକ୍କ ମଧ୍ୟ ଅଧା ଅକାମୀ ହୋଇଯାଇଥିଲା । ଏ ସବୁ ରୋଗକୁ ଅଙ୍ଗରେ ସାଇତି ରଖି ଘନଅଜା ସୁସ୍ଥ ଥିଲେ । ସବୁ ଦେଖିସାରିଲାପରେ ଡାକ୍ତର ଆଶ୍ଚର୍ଯ୍ୟ ହେଲେ । ତାଙ୍କଠୁ ଶୁଣିସାରି ଆମେ ଯେତେବେଳେ ସେଠି ତାଙ୍କ ମୃତ ଶରୀରକୁ ଆଣିବାକୁ ଯାଇଥିଲୁ ;

ଆମ୍ଭେମାନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଥିଲୁ । ଏସବୁ ଏଭଳି ସାଂଘାତିକ ରୋଗ ଯେ, ଏଥିରୁ ଯେକୌଣସି ଗୋଟିଏ ରୋଗ ହେଲେ ଜୀବନ ଧାରଣ କରିବା ଦୁଃସାଧ୍ୟ ହୁଏ । କିନ୍ତୁ ଶରୀରର କରାମତି ଦେଖ ତ !

ସବୁ ସାଧାରଣ ଡାକ୍ତର ଜାଣନ୍ତି ତାଙ୍କ ରୋଗୀଙ୍କ ଭିତରୁ ଶତକଡ଼ା ନବେ କେବଳ ଉଚିତ ଖାଦ୍ୟ, ବିଶ୍ରାମ ଓ ମନର ଶାନ୍ତି ପାଇଲେ ଆପେ ଆପେ ଭଲ ହୋଇଯିବେ । ଶରୀରରେ ସୁସ୍ଥ ରହିବା ପାଇଁ ଯେତେ ଅଙ୍ଗ ସବୁ ଯୋଗାଇ ଦିଆଯାଇଛି ତାହାର କେତେକ ଅଂଶ ଠିକ୍ ରହିଲେ ମଧ୍ୟ ଜଣେ ଲୋକ ସୁସ୍ଥ ରହିପାରିବ ।

ଫୁସ୍‌ଫୁସ୍‌ରେ ଯେତେବେଳେ ଯକ୍ଷ୍ମାରୋଗ ହୁଏ ସେଥିରେ ଫୁସ୍‌ଫୁସ୍‌ର ରୋଗ ଅଂଶ ଅକାମୀ କିମ୍ବା ନଷ୍ଟ ହୋଇଯାଏ କିନ୍ତୁ ଭଲ ଅଂଶ ପୂରା କାମ କରିବାକୁ ସକ୍ଷମ ଥାଏ । ଫଳରେ ରୋଗୀର କିଛି ଅସୁବିଧା ହୁଏ ନାହିଁ । ପ୍ରାଣୀମାନଙ୍କଠାରେ ପରୀକ୍ଷା କରାଯାଇ ଦେଖାଯାଇଛି ଯେ ଯକୃତ୍‌ର ୫ ଭାଗରୁ ୨ ଭାଗ କାଢ଼ିଦେଲେ ଆଉ ୩ ଭାଗରେ ମଧ୍ୟ ଶରୀରର ଆବଶ୍ୟକୀୟ କାର୍ଯ୍ୟ କରାଯାଇ ଶରୀରକୁ ସୁସ୍ଥ ରଖିହେବ । ଆମ ଶରୀରରେ ଯେଉଁ ୨୧ ଫୁଟ ଅନ୍ତନାଳୀ ଅଛି ସେଥିରେ ରୋଗ ହେଲେ ଡାକ୍ତରମାନେ ସେଥିରୁ ୫।୭ ଫୁଟ କାଟି ବାହାର କରି ଦିଅନ୍ତି, ତଥାପି ମଣିଷ ସୁସ୍ଥ ରହେ । ପାକସ୍ଥଳୀରେ କର୍କଟ ରୋଗ ହେଲେ ଡାକ୍ତରମାନେ ପୂରା ପାକସ୍ଥଳୀକୁ ଅସ୍ତ୍ରୋପଚାର କରି ବାହାର କରିଦିଅନ୍ତି, ସେଥିରେ ମଧ୍ୟ ବଞ୍ଚିବା ଅସୁବିଧା ହୁଏ ନାହିଁ । ଜଣେ ଲୋକଙ୍କର ଏଭଳି ଅପରେସନ୍ ପରେ ସେ ଏବେ ପୂରା ତିନିଜଣଙ୍କର ଖାଦ୍ୟ ଏକ ସମୟରେ ଖାଇ ପାରୁଛନ୍ତି ।

ବୃକକ କଥା ସ୍ୱତନ୍ତ୍ର । ଶରୀରରେ ଏଥିରୁ ୨ଟି ଅଛି । କେତେବେଳେ ସୁସ୍ଥଲୋକ ଏଭଳି ରୋଗୀଙ୍କ ପାଇଁ ଏଥିରୁ ସ୍ୱଚ୍ଛନ୍ଦରେ ଗୋଟିଏ ଦାନ କରିପାରୁଛନ୍ତି, ଯାହା ଫଳରେ ରୋଗୀ ଏଥିରେ ପୁନର୍ଜୀବନ ଲାଭ କରୁଛି ଏବଂ ଦାନ କଲାପରେ ସୁସ୍ଥଲୋକର ମଧ୍ୟ କୌଣସି ଅସୁବିଧା ହେଉନାହିଁ । ଏହାକୁ ଶରୀରର ସବୁ ଗୁରୁତର ପରିସ୍ଥିତି ସମ୍ଭାଳିବା ପାଇଁ ଈଶ୍ୱରଙ୍କର ଚରମ ବୁଦ୍ଧି କିମ୍ବା ଚରମ ଦାନ କୁହାଯାଇପାରେ ।

ଶରୀରକୁ ବିପଦରୁ ରକ୍ଷା କରିବା ପାଇଁ ବିଶ୍ରାମ ଏକ ପ୍ରାକୃତିକ ନିୟମ । ତୁମେ ନିଜେ ବିଶ୍ରାମ ନ ନେଲେ ଈଶ୍ୱରଙ୍କ ବିଧିରେ ଏହା ଆପେ ଆପେ ହୋଇଥାଏ । ଅଶୋକର ହାତ ଭାଙ୍ଗିଗଲା । ଡାକ୍ତରଙ୍କ ଆସିବା ପୂର୍ବରୁ, ପ୍ଲାଷ୍ଟର ଦେବା ପୂର୍ବରୁ ସେ ହାତ ମନକୁ ମନ ବିଶ୍ରାମ ପାଇଗଲା । କାରଣ ହାତ ଏପଟ ସେପଟ କରିବା ଏଭଳି ଯନ୍ତ୍ରଣାପୂର୍ଣ୍ଣ ଯେ ହାତକୁ ବିଶ୍ରାମ ଦେବାକୁ ଜଣେ ବାଧ୍ୟ । ସେହିଭଳି ଜଣେ ଅଧିକ ପରିଶ୍ରମ କଲେ ଏବଂ ବିଶ୍ରାମ ନ ନେଲେ ଶରୀର ଆପେ ଆପେ ଏଭଳି ଶକ୍ତି ପ୍ରୟୋଗ କରେ ଯେ ସେ ମୂର୍ଚ୍ଛାଯାଏ । ଏହା ମଧ୍ୟ ବିଶ୍ରାମର ଏକ ରୂପ । ଆପେ ଆପେ ବିଶ୍ରାମ ନ ନେଲେ ଶରୀର ତୁମକୁ ବାଧ୍ୟରେ ବିଶ୍ରାମ ଦେବ ।

ସେହିଭଳି ହାତ ଟିକେ ବ୍ଲେଡ୍‌ରେ କଟିଗଲେ ୩।୪ ଦିନ ପରେ ଟିକେ ପୂଯ ବାହାରେ । ଏ ପୂଯ କଣ ? ଏ କଟା ବାଟଦେଇ ନିୟୁତ ନିୟୁତ ଜୀବାଣୁ ଶରୀର ମଧ୍ୟରେ ପ୍ରବେଶ କରନ୍ତି କିନ୍ତୁ ଶରୀର ରୋଗ ପ୍ରତିରୋଧକାରିଣୀ ଶକ୍ତି, ଶ୍ୱେତରକ୍ତ କଣିକା ଏ ଜାଗାରେ ପହଞ୍ଚି ସେମାନଙ୍କର ଅବାଧ ଗତିପଥକୁ ପ୍ରତିରୋଧ କରନ୍ତି । ଏହା ଫଳରେ ବହୁ ଶ୍ୱେତରକ୍ତ କଣିକା ଏବଂ ଜୀବାଣୁ ମୃତାହତ ହୁଅନ୍ତି । ତାରି ଫଳ ପୂଯ । ଟିକଏ ପୂଯକୁ ଅଣୁବୀକ୍ଷଣ ତଳେ ଦେଖିଲେ ହଜାର ହଜାର ମୃତ ଶ୍ୱେତରକ୍ତ କଣିକା ଏବଂ ଜୀବାଣୁ ଦେଖାଯାନ୍ତି । ଏହି ପୂଯକୁ ଜୀବାଣୁ ବଢ଼ିବା ପଦାର୍ଥରେ ପକାଇ କିଛିଦିନ ପରେ ଦେଖିଲେ ସେହି ଜୀବାଣୁ ନିୟୁତ ନିୟୁତ ସଂଖ୍ୟାରେ ବଢ଼ିଥାନ୍ତି । ଏହାକୁ ଡାକ୍ତରୀ ଭାଷାରେ କହନ୍ତି କଲଚର । ପରିସ୍ରା, ପୂଯ, ରକ୍ତ, ତଣ୍ଟିର ଲାଳ, ଝାଡ଼ା, ଖଙ୍କାର ବହୁ ସମୟରେ ଡାକ୍ତରମାନେ ଜୀବାଣୁ କଲଚର ପାଇଁ ଦେଇ ରୋଗ ନିରୂପଣ କରିଥାନ୍ତି ।

ଏ ଶରୀର ପ୍ରକୃତରେ କୁରୁକ୍ଷେତ୍ର । ଏଥିରେ ସବୁବେଳେ ଜୀବାଣୁ ଏବଂ ଜୀବାଣୁମାରଣୀ ଶକ୍ତି ମଧ୍ୟରେ ତୁମୁଳ ଯୁଦ୍ଧ ଲାଗି ରହିଛି । ସୃଷ୍ଟିର ବିଚିତ୍ର ନିୟମ ଅନୁସାରେ ଶରୀର ସପକ୍ଷରେ ବହୁ ଯୋଦ୍ଧା ଅଛନ୍ତି । ପ୍ରଥମ ଶ୍ରେଣୀର ସୈନିକ ଶ୍ୱେତରକ୍ତ କଣିକା । ଶରୀରରେ ଜୀବାଣୁ ପଶିଲେ ସେମାନେ ଆପେ ଆପେ ସେମାନଙ୍କ ପାଖକୁ ଟାଣିହୋଇ ଚାଲି

ଆସନ୍ତି ଯେମିତି ଚୁମ୍ବକ ଲୁହା ପାଖକୁ ଟାଣି ହୋଇଯାଏ । ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖିଲେ ଏହି ଶ୍ୱେତରକ୍ତ କଣିକା, ଆସିବା ଭଳି ଆସ୍ତେ ଆସ୍ତେ ଆସି ଜୀବାଣୁକୁ ଗିଳି ପକାଏ । ଏଭଳି ପ୍ରକ୍ରିୟା ଚାଲିଥିବାବେଳେ ସେ ସ୍ଥାନରେ ଏଭଳି ରସ ବାହାରେ ତାହା ସତର୍କ ଘଣ୍ଟା ବଜାଇବା କାମକରେ । ଏହା ଫଳରେ ଅଳ୍ପ କେତେ ମିନଟ୍ ମଧ୍ୟରେ ନଯୁତ ନଯୁତ ଶ୍ୱେତରକ୍ତ କଣିକା ମାକ୍ରୋଫେଜ୍ ଆସି ପହଞ୍ଚିଯାଆନ୍ତି । ଏଭଳି କେତେ ଜୀବାଣୁ ଅଛନ୍ତି ତାଙ୍କ ଦେହରେ ଚାରିପଟେ ଏକ ରସ ବାହାରେ । ଏଭଳି ରସ ପ୍ରଭାବରେ ଶ୍ୱେତରକ୍ତ କଣିକା ସେମାନଙ୍କ ପାଖ ପହଞ୍ଚି ପାରନ୍ତି ନାହିଁ । ଏହି ଜୀବାଣୁମାନେ ରକ୍ତରେ ପଶିଲେ ତାକୁ ମାରିବା ପାଇଁ ଶରୀରରେ ବିଭିନ୍ନ ବ୍ୟବସ୍ଥା ଅଛି । ଲସିକା ଗ୍ରନ୍ଥି, ପ୍ଲୀହା, ଯକୃତ୍ ମେରୁମଜ୍ଜାରେ ସେମାନଙ୍କୁ ମାରିବା ପାଇଁ ଆଣ୍ଟିବଡ଼ି ତିଆରି ହୁଏ । ପ୍ରତି ଜୀବାଣୁ ପାଇଁ ଅଲଗା ଅଲଗା ଆଣ୍ଟିବଡ଼ି । ପ୍ରତ୍ୟେକର ସ୍ୱତନ୍ତ୍ର ଚରିତ୍ରିବା ପଡ଼ି । ଏସବୁ ରକ୍ତରେ ଥିବା ପୁଷ୍ଟିସାରରୁ ତିଆରି ହୁଅନ୍ତି, ଯାହାକୁ ଡାକ୍ତରମାନେ କହୁଛନ୍ତି ଗାମା ଗ୍ଲୋବୁଲିନ୍ । ଏସବୁ ହେଲାପରେ ମଧ୍ୟ ଏତେ ଶକ୍ତିଥାଇ ଶରୀର କିଛି ସମୟ ପାଇଁ ଯୁଦ୍ଧରେ ପରାସ୍ତ ହୁଏ । ପ୍ରଚଣ୍ଡ ଶକ୍ତିଶାଳୀ ଜୀବାଣୁ ସଙ୍ଗେ ସଙ୍ଗେ ଶ୍ୱେତରକ୍ତ କଣିକାକୁ ମାରି-ପକାନ୍ତି କିମ୍ବା ଏଭଳି ବିଷ ବାହାର କରନ୍ତି ଯେ ଶରୀର ଉପରେ ତାର କୁପ୍ରଭାବ ପଡ଼େ । ଏହା ଫଳରେ ଜ୍ୱର, ମାଂସପେଶୀ ଯନ୍ତ୍ରଣା, ମୁଣ୍ଡବିନ୍ଧା, ଝାଡ଼ାପରି ଲାଗି ରହେ । ତେଣୁ ଜ୍ୱର ଗୋଟିଏ ରୋଗ ନୁହେଁ । ଏହା ବହୁ ରୋଗର ଗୋଟିଏ ଲକ୍ଷଣ । ଜ୍ୱର ଶରୀର ପ୍ରତିରକ୍ଷା ପାଇଁ ପ୍ରସ୍ତୁତ ବୋଲି ଏକ ଚିହ୍ନ । ଶରୀର କିତାପଟ ହେଲେ ଜ୍ୱର ଆପେ ଆପେ ଛାଡ଼ିଯିବ ।

ଜୀବାଣୁ ଓ ଭୂତାଣୁଜନିତ ରୋଗ ଛଡ଼ା ଆଉ କେତେକ ରୋଗ ଜନ୍ମରୁ ହୁଅନ୍ତି । ଗର୍ଭାବସ୍ଥାରେ ମାଆକୁ ଜର୍ମାନ ମିଳିମିଳା ହେଲେ ପିଲାକୁ ଜନ୍ମ ବେଳଠାରୁ ହୃଦରୋଗ ହୁଏ । ଆଉ କେତେକ ରୋଗ ଗ୍ରହଣ-ଖଣ୍ଡିଆ, ଆଖିରେ ପରଳ ମାଡ଼ିଯିବା, ହାତଗୋଡ଼ ବଙ୍କାହେବା ଜନ୍ମରୁ ମଧ୍ୟ ହୋଇଥାଏ । କେତେକ ପିଲାଙ୍କର ଜନ୍ମରୁ ହଳଦିଆ କାମଳ, ରକ୍ତହୀନତା ମଧ୍ୟ ଦେଖାଯାଏ । ସେସବୁ କାରଣ ତୁମେ ଡାକ୍ତର ହେଲେ ଜାଣିବ ଏବଂ ଗବେଷଣା କରି ତା'ର ଔଷଧ ବାହାର୍ କରିବ ।

କଣ କଲେ ଏ ସାଧାରଣ ରୋଗ, ଜ୍ୱର, ଝାଡ଼ା, କୃମି, ମେଲେରିଆ, ହଳଦିଆ କାମଳ ପ୍ରଭୃତି ହେବ ନାହିଁ—ସକାଳୁ ସୂର୍ଯ୍ୟ ଉଦୟ ପୂର୍ବରୁ ଉଠିବ, ନିତ୍ୟକର୍ମ ସାରି ବ୍ୟାୟାମ କରିବ ଅଧଘଣ୍ଟାଏ, ଅଧଘଣ୍ଟାଏ ଧୀରସ୍ଥିର ଭାବରେ ବସି ମନେ ମନେ ଭାବିବ ଏ ପୃଥିବୀ କେତେ ବଡ଼, କେତେ ବିଚିତ୍ର, ବଞ୍ଚିବା ପାଇଁ ଈଶ୍ୱର କେତେ ଉପାଦାନ ଦେଇଛନ୍ତି । ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେବ । ବଜାରରୁ କୌଣସି ମାଛିବସା ଜଳଖିଆ କିମ୍ବା ବାସି ଜଳଖିଆ ଖାଇବ ନାହିଁ । ଅଇଁଠା ଖାଦ୍ୟ ଖାଇବ ନାହିଁ କିମ୍ବା ଅଇଁଠା ପାଣି ପିଇବ ନାହିଁ । ପାଚିଲାଫଳ ଓ କୋଳି ଧୋଇ ଖାଇବ । ଏହାକଲେ ଜିଆ କିମ୍ବା ଗୁଣ୍ଡୁଚି ହେବେ ନାହିଁ । ପାଇଖାନା ବ୍ୟବହାର କରିବ ନଚେତ୍ ଗାନ୍ଧୀ ପାଇଖାନା ବ୍ୟବହାର କରିବ । ଖାଲି ପାଦରେ ମଇଳା କାଦୁଅରେ ଯିବନାହିଁ । ଏହା ଫଳରେ ଅଙ୍କୁଶ କୃମି ଆକ୍ରମଣରୁ ରକ୍ଷା ପାଇବ । ପାଣି ସିଝାଇ ଥଣ୍ଡା-କରି ପିଇଲେ ହଳଦିଆ କାମଳ, ଝାଡ଼ା, ବାନ୍ତି, ଗ୍ରହଣୀ ରୋଗ ହେବ ନାହିଁ । ମଶାରି ପକାଇ ଶୋଇଲେ ମ୍ୟାଲେରିଆ, ଫାଇଲେରିଆ ରୋଗ ହେବ ନାହିଁ । ଧନୁଷ୍ଟଙ୍କାର, ହଇଜା, ଟାଇଫଏଡ଼, ଡିପ୍‌ଥେରିଆ ପ୍ରଭୃତି ରୋଗ ପାଇଁ ଟିକା ନେଲେ ଏ ରୋଗ ହୁଏ ନାହିଁ ।

●

---

## କର ନାହିଁ

କାହାରି ସହିତ ଶତ୍ରୁତା, କାହା ପ୍ରତି ମନ୍ଦଚିନ୍ତା, କଳିତକରାଳ କାହାରିକୁ ଲୋକଙ୍କ ମଧ୍ୟରେ (ସଭାରେ) ଅପମାନିତ, କାହାରିକୁ ବେଖାତିର, କାହାରି ଅନିଷ୍ଟ, କାହା ନାମରେ ଚୁଗୁଲି, କାହାରି ସହିତ ଦୁର୍ବ୍ୟବହାର, ମଦୁଆଙ୍କ ସଙ୍ଗେ ବନ୍ଧୁତା, ଖଚୁଆଙ୍କ ସହିତ ମିତ୍ରତା, ଜୁଆଡ଼ିଙ୍କ ସହିତ ଭାବ, ଭଲକଥା ଉପରେ କ୍ରୋଧ, ଗୁରୁଜନଙ୍କ ଉପରେ ରାଗ, କାହାରି ସହିତ ଧୋକାବାଜ, କାହା ଉପରେ ଜୁଲମ, କାହା ପ୍ରତି କଟୁ ମନ୍ତବ୍ୟ ।

—ଲୋକରତ୍ନ

# ମଣିଷ ଓ ଔଷଧ

ଇତିହାସ ଆରମ୍ଭରୁ ମଣିଷ ରୋଗରୁ ଭଲହେବା ପାଇଁ ଔଷଧ ବ୍ୟବହାର କରି ଶିଖିଛି । କେତେକ ଔଷଧ ସେ ଖାଏ, କେତେକ ବା ଲଗାଏ । ଅନୁନ୍ନତ ଆଦିବାସୀ ସମାଜ ଅଛନ୍ତି ଯେଉଁମାନେ ଲେଖାପଢ଼ା ଶିଖିନାହାନ୍ତି । ବର୍ତ୍ତମାନର ସଭ୍ୟତା ମାପକାଠିରେ ସେମାନେ ହୁଏତ ଆଦିମ ଓ ଅସଭ୍ୟ; କିନ୍ତୁ ସେମାନେ ଗାଁ ମୁଖିଆଙ୍କ କଥାରେ ଚେରମୂଳ ଔଷଧ ଖାଆନ୍ତି ଓ ଲଗାନ୍ତି । ସେଥିରେ ସେମାନେ ଭଲ ମଧ୍ୟ ହୋଇଯାନ୍ତି । ସେଇକଥାକୁ ସେମାନେ ଈଶ୍ୱରଙ୍କ ଆଶୀର୍ବାଦ ବୋଲି ଭାବନ୍ତି । ସଭ୍ୟ ମଣିଷ ଏଥିରେ ବିବ୍ରତ ହେବାର କିଛି ନାହିଁ କିମ୍ବା ଏହାକୁ ଗୁରୁତ୍ୱ ନ ଦେବାର କୌଣସି କାରଣ ନାହିଁ । ଅତି ସଭ୍ୟ ଦେଶର କେତେକ ଲୋକ ବର୍ତ୍ତମାନ ମଧ୍ୟ ଏହିଭଳି ଔଷଧ ବ୍ୟବହାର କରନ୍ତି । ଏମିତିକି ଫ୍ରାନ୍ସ୍ ଦେଶର ସାଧୁଆଶ୍ରମରେ ଯେଉଁସବୁ କାଠପେଟି (କ୍ୟାବିନେଟ୍) ଥାଏ ତାର ନାମ ଫାର୍ମାସୀ । ସେଥିରେ ଏପରି କେତେ ଚେରମୂଳ ଔଷଧ ଥାଏ ।

ମଣିଷର ଜାଣତରେ ପଶୁ, ପକ୍ଷୀ, ଗଛଲତା, କାଠ ପଥର, ଖଣିଜ ପଦାର୍ଥ ଏପରି କୌଣସି ପଦାର୍ଥ ନାହିଁ ଯାହା କେବେ ଔଷଧ ଭଳି ବ୍ୟବହାର କରାଯାଇ ନାହିଁ । ଏପରିକି ଗାଈ ଗୋବର ଚର୍ମ ଦରଜ ହୋଇଥିବା ଲୋକ ପିଅନ୍ତି । ଘୋଡ଼ା ଗୋବର ଯକ୍ଷ୍ମା ହୋଇଥିବା ଲୋକ ଖାଆନ୍ତି । ବଗୁଡ଼ି ଗୁହ ବିଷ ପିଇଥିବା ଲୋକଙ୍କୁ ଦିଆଯାଏ । ସବୁ ମଣିଷ ଜାଣନ୍ତି ସବୁ ରୋଗ ପାଇଁ ଔଷଧ ଖାଇବାକୁ ହେବ । ସମସ୍ତେ ଅଳ୍ପେ ବହୁତେ ଔଷଧ ଜାଣନ୍ତି । ଘର ମାଇପେ ଛୁଆଙ୍କର କାଶ, ସର୍ଦ୍ଦି, ଥଣ୍ଡା-ଜ୍ୱର ପାଇଁ ଟୁଟ୍‌କା ଔଷଧ କରିବା କିଏ ନ ଜାଣେ ?

## ଆୟୁର୍ବେଦ :

ପୃଥିବୀରେ କେଉଁ ସମୟରେ କିଭଳି ଔଷଧ ବ୍ୟବହାର ହେଉଥିଲା ତାର କୌଣସି ଇତିହାସ ନାହିଁ, କିନ୍ତୁ ଏତିକି ଜାଣିଲେ ଯଥେଷ୍ଟ ହେବ, ସାଢ଼େ ତିନିହଜାର ବର୍ଷ ତଳେ ଭାରତରେ ଏବଂ ମିଶର ଦେଶରେ

ଯାତଶ ଔଷଧର ତାଲିକା ପ୍ରକାଶ ପାଇଥିଲା । ଚରକ ସଂହିତା ଓ ଶୁଶ୍ରୁତ ସଂହିତାରେ ଅନେକ ଔଷଧର ତାଲିକା ରହିଛି । ଏଲୋପାଥିକ ଔଷଧର ପ୍ରଥମ ତାଲିକା ପେରଟ୍ ସାହେବ ପ୍ରଥମେ କରିଥିଲେ ଅଠରଶହ ଚଉବନ ମସିହାରେ ଏବଂ ଏହା ପଚାଶ ଶହ ସତସ୍ତର ପୃଷ୍ଠାର ବହି ।

ମଣିଷ କେମିତି ଜାଣିଲା ବାହାର ଜିନିଷ ଖାଇଲେ ଓ ଲଗାଇଲେ ରୋଗ କମିଯାଏ, ତାହା ଜାଣିବା କଷ୍ଟ । କିନ୍ତୁ ଉଣେଇଶ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମଣିଷ ବହୁତ ରୋଗର କାରଣ ଓ ଔଷଧ କିପରି କାମ କରୁଛି ଜାଣି ନଥିଲା । ଆଦିମ ମଣିଷ ହୁଏତ ନିଜ ଉପରେ ଔଷଧ ପ୍ରୟୋଗ କରି ଭୁଲ ଉପାୟରେ ଔଷଧଗୁଡ଼ିକର ଗୁଣ ନିର୍ଦ୍ଧାରଣ କରିଥିବ ଏବଂ ଏହି ଉପାୟରେ ପୁଷ୍ଟିକର ଖାଦ୍ୟ ଓ ଔଷଧ ବ୍ୟତୀତ ସେ ଉନ୍ମାଦକ ଜିନିଷ ଯଥା—ମଦ, ଅଫିମ, ଗଞ୍ଜେଇ, କୋକୋ, ଗୁ'ର ବ୍ୟବହାର ଶିଖିଥିବ । ଏହିଭଳି ଅନେକ ଗଛଲତା ସେ ବାହାର କରିଛି ଯାହାର ଦ୍ରବ୍ୟଗୁଣ ବର୍ତ୍ତମାନ ଔଷଧ ବିଜ୍ଞାନକୁ ଅନେକାଂଶରେ ପ୍ରଭାବିତ କରିଛି ଓ କରୁଛି । ଉଦାହରଣ ସ୍ୱରୂପ ସିନ୍‌କୋନା ଗଛର ଛେଲିରୁ କୁଇନନ୍ ବାହାରୁଛି, ଯାହା ମେଲେ-ରିଆର ଅବ୍ୟର୍ଥ ଔଷଧ । କିନ୍ତୁ ଆଦିମ ମଣିଷ ଏହି ଔଷଧର ଦ୍ରବ୍ୟଗୁଣ ନଜାଣି ପ୍ରତ୍ୟେକ ରୋଗରେ ସିନ୍‌କୋନା ଛେଲି ବ୍ୟବହାର କରୁଥିଲେ ।

## ଦୁଃମିଶ୍ରିତ ଔଷଧ :

ଟରେ ଦ୍ରବ୍ୟଗୁଣ ନଥାଇ ସେ ଅନେକ ଔଷଧ ଖାଲି ବ୍ୟବହୃତ ହେଲା ତା ନୁହେଁ, ଅନେକ ସମୟରେ ପଚିଶରୁ ଶହେ ଔଷଧ ମିଶାଇ ଔଷଧ ତିଆରି କରାଗଲା । ଏହିଭଳି ଔଷଧର ପ୍ରଚଳନ ୟୁରୋପରେ ଅଠରଶହ ମସିହାରେ ବହୁଳ ପ୍ରସାର ଲାଭ କଲା । ଶେଷରେ ଏଭଳି ଅବସ୍ଥା ହେଲା ଯେ ଔଷଧ ଦୋକାନରେ କାମ କରୁଥିବା ଲୋକ କିଛି ଫୋପାଡ଼ ଦେଲେ ନାହିଁ । ସବୁ ମିଶାଇ ଏପରିକି ଘର ଧୂଳିରୁ ମଧ୍ୟ ଔଷଧ ତିଆରି କଲେ । ଏହି ଔଷଧର ନାମ ଥେରିଆକ୍ । ଫ୍ରାନ୍‌ସ୍ ଏବଂ ଇଂଲଣ୍ଡରେ ଏହି ଔଷଧର ବହୁଳ ପ୍ରୟୋଗ ହେଲା । ଭଲ ପରିବର୍ତ୍ତେ ଭେଲ ହେଲା । ଏହି ଦୁଃମିଶ୍ରିତ ଔଷଧ ଖାଇ ବହୁ ରୋଗୀ ମୃତ୍ୟୁ ବରଣ କଲେ । ଏହି ସମୟରେ ସତରଶହ ଛପ୍ନାଳିଶ ମସିହାରେ ଆବରିଡ଼ନ୍ ସାହେବ ଏହି ପ୍ରକାର ଔଷଧ ବିରୋଧରେ ପ୍ରଚାର ଆରମ୍ଭ

କଲେ । ତଥାପି ସତରଶହ ଅଠାଅଶୀ ମସିହା ପର୍ଯ୍ୟନ୍ତ ଏହା ଫ୍ରାନ୍ସ୍ ଔଷଧ ବିଜ୍ଞାନ ବହିରୁ କଟାଯାଇ ପାରିଲା ନାହିଁ ।

## ହୋମିଓପାଥି :

ଔଷଧ ବିଜ୍ଞାନର ଏହିଭଳି ଘଡ଼ିସନ୍ଧିବେଳେ ଯେତେବେଳେ ମଣିଷ ଦ୍ରବ୍ୟଗୁଣ ନଥିବା ଯାହାତାହା ଔଷଧ ମାସ ମାସ ଧରି ଖାଉଥିଲା ଏବଂ ବିଶେଷ ଲାଭବାନ୍ ହେଉନଥିଲା ଏବଂ ବହୁ ସମୟରେ ମୃତ୍ୟୁ-ମୁଖରେ ପଡ଼ୁଥିଲା, ହାନିମ୍ୟାନ ଅଠରଶ ଦଶ ମସିହାରେ ହୋମିଓପାଥି ସୂତ୍ର ବାହାର କଲେ, ଯାହାର ମୂଳମନ୍ତ୍ର ହେଲା ଏହି ଔଷଧ ଖାଇ ଯେଉଁ ରୋଗ ହେଉଛି ସେହି ଔଷଧର ଅସଂଖ୍ୟ ଭାଗରୁ ଭାଗେ ଖାଇଲେ ରୋଗ ଭଲ ହୋଇଯିବ । କଣ୍ଟକେନୈବ-କଣ୍ଟକମ୍ । କଣ୍ଟା କଣ୍ଟାରେ କଢ଼ାହୁଏ । ସାଧାରଣ ଅର୍ଥରେ ହଳଦିଆ କାମଳ ଭଲ ହେବା ପାଇଁ ହଳଦିଆ ଫୁଲ ଥିବା କୌଣସି ଗଛର ରସ ଖାଇଲେ ଚଳିବ । ହୋମିଓପାଥି ଔଷଧ ବହୁତ ଅଳ୍ପ ପରିମାଣରେ ବ୍ୟବହାର କରାଯାଉ ଥିବାରୁ ତାହା ଅଠରଶ ମସିହାର ଦୁଃମିଶ୍ରିତ ଔଷଧ ଯେଉଁଆକ ପରି ଦେହକୁ କ୍ଷତାକ୍ତ କରେନାହିଁ । କିନ୍ତୁ ରୋଗର କାରଣ ଓ ଜୀବାଣୁତତ୍ତ୍ୱ ଉପରେ ଏହି ବିଜ୍ଞାନ ଅଦ୍ୟାବଧି କୌଣସି ପ୍ରଭାବ ପକାଇ ପାରିନାହିଁ । ଠିକ୍ ଯଥା—ପୁରାଣର ହନୁମାନ ବିଶଲ୍ୟକରଣୀ ନପାଇ ଯେପରି ଗନ୍ଧମାର୍ଦ୍ଦନ ପର୍ବତ ଆଣିଲା ତାହା ଆଉ ଦରକାର ହେଲାନାହିଁ । ବିଶଲ୍ୟକରଣୀ ଅନେକ ଚିହ୍ନିବାକୁ ଚେଷ୍ଟାକଲେ ।

## ଆଧୁନିକ ଔଷଧ :

୧୮୦୫ ମସିହାରେ ଜର୍ମାନ ବୈଜ୍ଞାନିକ ସର୍ଟନର୍ ଅଫିମରୁ ମର୍ଫିଆ କାଢ଼ିଲେ । ଏହା ଔଷଧ ବିଜ୍ଞାନର ଇତିହାସରେ ଶୁଭଦିନ । ପରେ ପରେ କୋଚିଲାଖାଇରୁ ଷ୍ଟ୍ରିକ୍‌ନିନ୍ ଏବଂ ଧାତୁରରୁ ଆଟ୍ରୋପିନ୍ ବାହାରିଲା । ଡକ୍ଟର ମାଜେଣ୍ଡି ଅଠର ଶହ ବାଇଶ ମସିହାରେ ପ୍ରଥମେ ଘୋଷଣା କଲେ ଯେ ଏତେ ଔଷଧ ମିଶାଇ ଦେବା ଅପେକ୍ଷା ଗୋଟିଏ ଔଷଧ ଦେଲେ ଚଳିବ । ୧୮୫୩ ମସିହାରେ ଉଡ୍ ଇଞ୍ଜେକ୍‌ସନ୍ ଦେବା କଥା ଶିଖାଇଲେ । ମର୍ଫିନ ଇଞ୍ଜେକସନ୍ ସେ ରାତି ୧୦ଟା ବେଳେ ଦେଇଥିଲେ ଏବଂ ୧୪ ଘଣ୍ଟା ପରେ ରୋଗୀ ନିଦ୍ରାରୁ ଉଠିଲା ।

## ସଂଶ୍ଳେଷିକ ଔଷଧ :

ବୈଜ୍ଞାନକମାନେ ପଶୁପକ୍ଷୀ, ଖଣିଜ ପଦାର୍ଥ, ଗଛଲତା ଗୁଡ଼ ସଂଶ୍ଳେଷିକ ଔଷଧ ବିଜ୍ଞାନାଗାରରେ ବାହାର କଲେ । ବ୍ରଣ୍ଟନ୍ ପ୍ରଥମେ ୧୮୬୭ ମସିହାରେ ହୃଦ୍‌ରୋଗୀମାନଙ୍କଠାରେ ଆମିଲ ନାଇଟ୍ରାଇଟ୍ ବ୍ୟବହାର କଲେ । ସେ ଔଷଧ ବର୍ତ୍ତମାନ ମଧ୍ୟ ବ୍ୟବହାର ହେଉଅଛି । ଏହି ସମୟରେ ବିଜ୍ଞାନାଗାରରେ କ୍ଲୋରଫର୍ମ ଏବଂ ଇଥର୍‌ର ସୃଷ୍ଟି ଏବଂ ଅସ୍ତ୍ର ଚିକିତ୍ସାର ଆରମ୍ଭ ।

କିନ୍ତୁ ନିଶା ଦେଇ ଅପରେସନ କଲାପରେ ଦେଖାଗଲା ଡାକ୍ତରଖାନାରେ ସମସ୍ତ ଘା' ପାଚୁଛି । ୧୮୬୭ ମସିହାରେ ଲିଷ୍ଟର କାର୍ବୋଲିକ ଏସିଡ଼୍ ଲଗାଇ ଏଇ ଘା'କୁ ରକ୍ଷା କରିବାକୁ ଲାଗିଲେ । ଏହିଠାରୁ ଅସ୍ତ୍ରୋପଚାର ପରେ କପର ଘା' ନହେବ ଓ ପୂଯ ନହେବ ଜଣାପଡ଼ିଲା । ଏଇ ସମୟରେ ଜଣାପଡ଼ିଲା ବହୁତ ରୋଗର କାରଣ ଜୀବାଣୁ ଏବଂ ୧୯୦୮ ମସିହାରୁ ୧୯୪୦ ମସିହାରେ ସଲ୍‌ଫା ଔଷଧ ବାହାରିଲା ।

## ରସାୟନୋପଚାର :

ସଲଫା ଔଷଧ ଉଦ୍ଭାବନ ପୃଥିବୀର ଔଷଧ ବିଜ୍ଞାନ ଇତିହାସରେ ଯେତେ ଉଦ୍ଭାବନ ହୋଇଅଛି, ସେମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ୧୯୦୮ରୁ ଜର୍ମାନୀରେ ଏହି ଚିକିତ୍ସା ପଦ୍ଧତି ବାହାରିଥିଲା କିନ୍ତୁ ୧୯୩୫ ମସିହାରେ ଜର୍ମାନ ଡାକ୍ତର ଡୋମାକ ଘୋଷଣା କଲେ ଏହି ପଦ୍ଧତିରେ ବ୍ୟବହୃତ ଔଷଧର ପ୍ରଭାବରେ ରୋଗର ଜୀବାଣୁ ସବୁ ମରିଯାଉଛନ୍ତି ଏବଂ ଘା', ବଥର ପୂଯ ସବୁ ଶୁଖିଯାଉଛି । ଏହି ଚିକିତ୍ସା ପଦ୍ଧତି ଯେଉଁ ଦିନରୁ ବାହାରିଥିଲା ଯଦି ବ୍ୟବହାର କରାଯାଇ ପାରିଥାନ୍ତା ତେବେ ପ୍ରଥମ ମହାଯୁଦ୍ଧଠାରୁ ଦ୍ୱିତୀୟ ମହାଯୁଦ୍ଧ ଭିତରେ ଲକ୍ଷ ଲକ୍ଷ ଲୋକ ବଞ୍ଚି ଯାଇଥାନ୍ତେ । ୧୯୩୯ରେ ଡୋମାକଙ୍କୁ ନୋବେଲ ପ୍ରାଇଜ୍ ଦିଆଯାଇଥିଲା । ହିଟଲରଙ୍କ ବାରଣ ଯୋଗୁ ସେ ଏହାକୁ ଗ୍ରହଣ କରିପାରି ନ ଥିଲେ ।

## ଆଣ୍ଟିବାୟୋଟିକ୍ :

ସଲ୍‌ଫୋନାମାଇଡ୍ ପରେ ଔଷଧ ବିଜ୍ଞାନ ଇତିହାସରେ ଆବିର୍ଭୂତ ହେଲା ଆଉ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ—ପେନ୍‌ସିଲିନ୍ । ଆଲେକ୍‌ଜାଣ୍ଡର ଫ୍ଳେମିଂ ୧୯୨୮ ମସିହାରେ ଏକ ଛତୁଜାତୀୟ ଉଦ୍ଭିଦ ଆବିଷ୍କାର କଲେ—ପେନସିଲିୟମ ନୋଟେଟମ । ଏହି ଛତୁଜାତ ପଦାର୍ଥ ଜୀବାଣୁ-ମାନଙ୍କ ବୃଦ୍ଧିକୁ ରୋକିବାରେ ଖୁବ୍ ସଫଳ ହେଲା, କିନ୍ତୁ ଫ୍ଳେମିଂ ଏହି ଛତୁରୁ ପେନ୍‌ସିଲିନ୍ ବାହାର କରିବାରେ ସମର୍ଥ ହୋଇ ନ ଥିଲେ । ଏହାର ଦଶବର୍ଷ ପରେ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ପ୍ରଫେସର ହାଓ୍ୱାର୍ଡ଼ ଫ୍ଲୋରେ ତାଙ୍କର ମୁଖ୍ୟ ସହକର୍ମୀ ବୋରିସ୍‌ଚେନଙ୍କ ସହିତ ମିଶି ଅଳ୍ପ ପେନସିଲିନ୍ ତିଆରି କଲେ ।

୧୯୪୦ ମସିହା ଅକ୍ଟୋବର ୧୨ ତାରିଖରେ ଜଣେ ପୋଲିସ୍ କର୍ମଚାରୀ ଅକ୍‌ସଫୋର୍ଡ଼ ଡାକ୍ତରଖାନାରେ ଭର୍ତ୍ତି ହେଲେ । ତାଙ୍କର ଭୀଷଣ ଜ୍ୱର ଏବଂ ରକ୍ତରେ ଜୀବାଣୁମାନେ ବୃଦ୍ଧି ପାଉଥିଲେ । ଏହି ଔଷଧ ଇଞ୍ଜେକ୍‌ସନ ଦେଲାପରେ ତାଙ୍କର ଅବସ୍ଥାର ଉନ୍ନତି ଘଟିଲା କିନ୍ତୁ ଔଷଧ ଅଣ୍ଟିଲା ନାହିଁ, ସେ ମରିଗଲେ । ଦ୍ୱିତୀୟ ପରୀକ୍ଷାରେ ଜଣାପଡ଼ିଲା ଯେ, ଏପରି ଜୀବନର ରକ୍ଷାକାରୀ ଔଷଧ କେବେ ଆଉ ବାହାରି ନାହିଁ । ସେତେବେଳେ ବ୍ରିଟେନ ଦ୍ୱିତୀୟ ମହାଯୁଦ୍ଧରେ ବ୍ୟସ୍ତ ଓ ଦେଶର ଅର୍ଥନୀତି ପ୍ରାୟ ବିପନ୍ନ । ସେଥିପାଇଁ ଫ୍ଲୋରେ ଆମେରିକା ଯାଇ ଆମେରିକାର ବିଜ୍ଞାନୀମାନଙ୍କୁ ପ୍ରଭାବିତ କରି ଅଧିକ ପେନ୍‌ସିଲିନ୍ ଉତ୍ପାଦନ କରିବାକୁ ସମର୍ଥ ହେଲେ । ଏହି ମହାସମରରେ ପେନ୍‌ସିଲିନ୍ ବହୁଳ ବ୍ୟବହୃତ ହେଲା ।

ଏବେ ବହୁତ ଆଣ୍ଟିବାୟୋଟିକ୍ ବାହାରିଲାଣି କିନ୍ତୁ ପେନସିଲିନ୍ ବ୍ୟବହାର ସବୁଠାରୁ ବେଶୀ । ଏଥିପାଇଁ ଫ୍ଳେମିଂ ଓ ଫ୍ଲୋରେ କୋଟିପତି ହୋଇପାରିଥାନ୍ତେ କିନ୍ତୁ ସେ ତାହା ଚାହିଁଲେ ନାହିଁ । ୧୯୪୫ ମସିହାରେ ଫ୍ଳେମିଂ, ଫ୍ଲୋରେ, ଚେନ୍ ନୋବେଲ ପ୍ରାଇଜ୍ ପାଇଲେ ।

୧୯୪୫ରୁ ୧୯୮୫ ମଧ୍ୟରେ କେତେ ପରିବର୍ତ୍ତନ ଘଟିଲାଣି । ଗତ ୨୦୦ ବର୍ଷ ମଧ୍ୟରେ ମଣିଷ ଔଷଧ ବିଜ୍ଞାନ ବିଷୟରେ ସେତିକି ଜାଣି

ନଥିଲ, ଏବେ ପ୍ରତ୍ୟେକ ବର୍ଷ ତା'ଠାରୁ ଅଧିକ ଜାଣିବାକୁ ପଡ଼ୁଛି । ଯକ୍ଷ୍ମା, କୁଷ୍ଠ, କାନ୍‌ସର, ଭାଇରସ ରୋଗ ସବୁ କର୍ତ୍ତୃତ୍ୱାଧୀନ ହେଲେଣି । ପୁରୁଣା ଚିରା ପୋଷାକ ଫୋପାଡ଼ ଦେଲାଭଳି ଆମ୍ଭେମାନେ ହୃତ୍‌ପିଣ୍ଡ, ଯକୃତ୍, ଗ୍ଲାଣ୍ଡ଼ଗଣ୍ଡି, ବୃକକ, ଫୁସଫୁସ ବଦଳେଇ ଦେଉଛୁ । ଏସବୁ ସତ୍ତ୍ୱେ ଆହୁରି ଅନେକ ବାଟ ଯିବାକୁ ହେବ ।

ଅତୀତରେ ଆୟୁର୍ବେଦ ଏବଂ ଥେରାପିର ଔଷଧ ଦୁଃମିଶ୍ରଣ-ଠାରୁ ଆମ୍ଭେମାନେ ଆସି ଆଜ କେତେ ଦୂରରେ, ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ତଥାପି ଭୁଟ୍‌କା ଭୁଟ୍‌କି ଔଷଧକୁ ଏବେ ବି ମଣିଷ ଛାଡ଼ିପାରି ନାହିଁ । ତେଣୁ ଔଷଧ କହିଲେ ଆୟୁର୍ବେଦ, ହୋମିଓପାଥି, ଏଲୋପାଥି ନୁହେଁ, ପ୍ରକୃତରେ ଏହା ମଣିଷର ଜ୍ଞାନ ଉପରେ ନିର୍ଭର କରେ । ଆଧୁନିକ ଔଷଧ ଅଧିକ ଜ୍ଞାନ ଓ ବିଜ୍ଞାନ ସମ୍ମତ ।

---

## ହସରେ ଉକ୍‌ଟରେଟ୍

ତେଲ୍ ଆଭିଭ ବିଶ୍ୱବିଦ୍ୟାଳୟରୁ ହସ ଉପରେ ଗବେଷଣା କରି ପିଏଚ. ଡି. ପାଇଥିବା ମି. ଜିଭ୍‌ଙ୍କ ମତରେ ହସର ଔଷଧୀୟ ଗୁଣ ଏତେ ବେଶୀ ଯେ ତାହା କଳନା କରିହେବନି । ତାଙ୍କ ଗବେଷଣାର ଫଳାଫଳ କୌତୂହଳୋଦ୍ଦୀପକ, ଉପଯୋଗୀ ଏବଂ ଆନନ୍ଦଦାୟକ । ତାଙ୍କର କେତୋଟି ମତବାଦ :

ହସଦ୍ୱାରା ମଣିଷ ବହୁ କଥା ଶିଖେ । ଶିକ୍ଷକ ପଢ଼ାଇବା ବେଳେ ହସ ମାଧ୍ୟମରେ ଯାହା ଶିକ୍ଷା ଦିଅନ୍ତି, ତାହା ଛାତ୍ର ଖୁବ୍ ଶୀଘ୍ର ଗ୍ରହଣ କରିନେଇଥାଏ । ମନସ୍ତାତ୍ତ୍ୱିକ ପରୀକ୍ଷା (Psychological test)-ମାନଙ୍କରେ ଖୁବ୍ ଅଧିକ ନମ୍ବର ରଖିବାରେ ହସ ବହୁ ସାହାଯ୍ୟ କରେ ।

ଆପଣ ଯଦି ଜଣେ ସେଲ୍‌ସମ୍ୟାନ ହୋଇଥାନ୍ତି, କିମ୍ବା ଜଣେ ବ୍ୟାଙ୍କ କ୍ଲର୍କ ହୋଇଥାନ୍ତି, ହସ ଭଲ କାମ ଦେବ ଆପଣଙ୍କ କାର୍ଯ୍ୟ କ୍ଷେତ୍ରରେ ।

---

# ହାଡ଼ଫୁଟି ! ମାଆ ନା ଭୂତାଣୁ

ମୁନୁକୁ କାଲଠୁଁ ଭରି ଜର । ଖଇଫୁଟା ତାତି । ଦେହ ହାତ ବନ୍ଧ ପକାଉଛି । ମୁଣ୍ଡ ଭିତରେ ଯେମିତି କଏ ହାତୁଡ଼ି ପିଟୁଛି । ଟିକଏ ଜର ହେଲେ ମୁନୁ କିଛି ଖାଇପାରେ ନାହିଁ । ଯାହା ଖାଏ ବାନ୍ତି ହୋଇଯାଏ ।

ଖାଇବା ପରେ ଚାରି ତିନି ଥରରୁ ବାନ୍ତି ବି ହୋଇଯାଉଛି । ବିଚରା ପିଲାଟା ରାତିସାରା ଶୋଇପାରି ନାହିଁ, ଏପଟ ସେପଟ ଗଡ଼ାଗଡ଼ି କରୁଛି । ସକାଳୁ ମୁନୁର ମାଆ ପୁଅକୁ ଧରି ଡାକ୍ତରଙ୍କ ପାଖରେ ପହଞ୍ଚିଲେ ।

ମୁନୁର ବୟସ ୧୦ ବର୍ଷ । ପଞ୍ଚମ ଶ୍ରେଣୀରେ ପଢ଼େ । ବୟସ ଅନୁପାତରେ ଓଜନ, ଉଚ୍ଚତା ଓ ଚେହେରା ଠିକ୍ ଅଛି । ମୁନୁର ମାଆ କହିଲେ, "ଡାକ୍ତରବାବୁ, ଟିକଏ ଥଣ୍ଡାରେ ମୁନୁର ଥଣ୍ଡି ଦରଜ ହୋଇ ଟନସିଲ ବଢ଼ି ଜ୍ୱର ହୁଏ । ଏଥର ତ ସେ ଥଣ୍ଡି ଦରଜ ବୋଲି କହୁନାହିଁ । ତାହାହେଲେ ତା'ର ୧୦୩ ଡିଗ୍ରୀ ତାତିରୁ ଜ୍ୱର ଛାଡୁନାହିଁ କାହିଁକି ?"

ଡାକ୍ତର ମୁନୁକୁ ପରୀକ୍ଷା କରିବାକୁ ଆରମ୍ଭ କଲେ । ତା'ର ଜାମା, ଗେଞ୍ଜି ଖୋଲି ପରୀକ୍ଷା ଟେବୁଲରେ ଶୁଆଇ ପକାଇଲେ । ଆଖି ଦେଖିଲେ । କାଳେ ଆଖି ହଳଦିଆ ପଡ଼ି ହଳଦିଆ କାମଳ ହୋଇଥିବ, କାରଣ ପିଲାମାନେ ଖରାଦିନେ ଆଇସକ୍ରିମ, ବରଫ ସରବତ୍, କୁଲଫି ଇତ୍ୟାଦି ବଜାରରୁ ଖାଆନ୍ତି ।

ଏସବୁ ଜିନିଷରେ ହଳଦିଆ କାମଳର ଭୂତାଣୁ ସବୁ ରହି ପେଟ ଭିତରେ ଯକୃତ୍‌କୁ ଧରିବାରୁ ହଳଦିଆ କାମଳ ରୋଗ କହନ୍ତି । ଭୂତାଣୁକୁ ଡାକ୍ତରୀ ଭାଷାରେ କହନ୍ତି ଭାଇରସ୍ । ସେମାନେ ଅତି କ୍ଷୁଦ୍ର । ସାଧାରଣ ଅଣୁବୀକ୍ଷଣ ଯନ୍ତ୍ର ତଳେ ସେମାନେ ଦେଖାଯାନ୍ତି ନାହିଁ । ସେମାନଙ୍କୁ

ଦେଖିବା ପାଇଁ ଅତି ଶକ୍ତିଶାଳୀ ଅଣୁବୀକ୍ଷଣ ଯନ୍ତ୍ର ଦରକାର । ଏଇ ଖରାଦିନରେ ଭୂତାଣୁମିଶା ଅପରିଷ୍କାର ପାଣି ପିଇବାରୁ ହଳଦିଆ କାମଳ ବେଶୀ ହୋଇଥାଏ ।

କିନ୍ତୁ ମୁନୁର ଆଖି ହଳଦିଆ ପଡ଼ି ନଥିଲା । ତଣ୍ଟିରେ ଟନସିଲ ବି ପାଚିନାହିଁ । ଛାତି ପରୀକ୍ଷା କଲେ, ଛାତିରେ କିଛି କଫ ନାହିଁ । ପେଟ ପରୀକ୍ଷା କଲେ, ଯକୃତ୍ କି ପ୍ଳୀହା କିଛି ବଢ଼ିନାହିଁ ।

ଡାକ୍ତର କହିଲେ, "ଏହା ଭୂତାଣୁ ଜ୍ୱର । ଏ ପ୍ରକାର ଜ୍ୱର ଖରାଦିନେ ବେଶୀ ହୋଇଥାଏ ।"

ମୁନୁର ମାଆ କହିଲେ, "ଡାକ୍ତରବାବୁ, ତା ତଳପେଟରେ ତିନି ଚାରିଟି ଫୋଟକା କ'ଣ ହୋଇଛି, ଦେଖିଲେ ?"

ଡାକ୍ତର ଦେଖି କହିଲେ, "ବୁଝିଲେ ଆଜ୍ଞା, ମୁନୁର ଏ ହାଡ଼ଫୁଟି । ଏହାକୁ ଡାକ୍ତରୀ ଭାଷାରେ ଚିକେନ୍ ପକ୍ସ କହନ୍ତି । ଆପଣଙ୍କ ଘରେ କି ଗାଁରେ କାହାର ହାଡ଼ଫୁଟି ହୋଇଛି କି ?"

ମୁନୁର ମାଆ କହିଲେ, "ସେ ଆଠ ଦଶ ଦିନ ତଳେ ତାର ମାମୁଘରକୁ ଯାଇଥିଲା । ସେଠାରେ ତା ମାମୁପୁଅ ଭାଇର ହାଡ଼ଫୁଟି ହୋଇଥିଲା ।" ଏଥର ଡାକ୍ତରଙ୍କର ରୋଗ ଚିହ୍ନିବାରେ ଆଉ କିଛି ଅସୁବିଧା ହେଲା ନାହିଁ । ସେ ସଙ୍ଗେ ସଙ୍ଗେ ମୁନୁ ପାଇଁ ଔଷଧ ଲେଖିଦେଲେ ।

ମନୁର ମାଆ କହିଲେ, "ହାଡ଼ଫୁଟି, ମିଳିମିଳା, ବସନ୍ତ କ'ଣ ରୋଗ ? ଏ ତ ମାଆ ! ତା ପାଇଁ କ'ଣ ଡାକ୍ତରୀ, ଏଲୋପାଥି ଔଷଧ ଧରିବ !

ମୁନୁକୁ ତ ନିମ୍ବପତ୍ରରେ ଶୁଆଇ ଲହୁଣି ମାରି ଗାଧୋଇଦେଲେ ଭଲ ହୋଇଯିବ ଆଉ ଔଷଧଗୁଡ଼ାକ ଦେବ କାହିଁକି ? ମା'ଙ୍କୁ ତ ଭୋଗ ଯାଚି ଦେଲଣି—ଟିକେ ପଣା ଦେବାକୁ ପଡ଼ିବ ।"

ଡାକ୍ତରଙ୍କର ଚାମ୍ବରରେ ସେତେବେଳେ ରୋଗୀଙ୍କର ଗହଳି ନଥିଲା । ସେ ମୁନୁର ମା'ଙ୍କୁ ଟିକେ ସ୍ୱାସ୍ଥ୍ୟଶିକ୍ଷା ଦେବାକୁ ଚାହିଁଲେ । ସେ ପଚାରିଲେ, "ତୁମ ନାଁ କ'ଣ ? ତୁମେ କେତେ ପଢ଼ିଛ ?"

"ମୋର ନାଁ ସୁଚରିତା । ମୁଁ ମାଟ୍ରିକ ପାସ କରିଛି ।"

"ତୁମେ ମାଟ୍ରିକ କ୍ଲାସରେ ସ୍ୱାସ୍ଥ୍ୟରକ୍ଷା ପଢ଼ିନାହଁ ? ହାଡ଼ଫୁଟି ବିଷୟରେ ଜାଣ ନାହିଁ ?" ମୁନୁର ମାଆ କହିଲେ, "ବିଜ୍ଞାନ ବହିରେ ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ପ୍ରାଣୀ ବିଜ୍ଞାନ ପ୍ରଭୃତି ଏତେ ବିଷୟ ଅଛି ଯେ ଶରୀର ବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷା ବିଷୟ ଆଦୌ ନ ପଢ଼ିଲେ ମଧ୍ୟ ଜଣେ ପିଲା ପରୀକ୍ଷାରେ ପାସ କରିଯିବ । ଶରୀର ବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧରେ ଅତିରିକ୍ତ ବିଷୟ ପଢ଼ିବାକୁ ଅଛି, ତାହା ସାଧାରଣତଃ ପାଠରେ ଦୁର୍ବଳ ପିଲାମାନେ ନେଇଥାଆନ୍ତି । ମୁଁ ଭଲ ପଢ଼ୁଥିବାରୁ ଗଣିତ ଅତିରିକ୍ତ ବିଷୟ ରୂପେ ନେଇଥିଲି କିନ୍ତୁ ବର୍ତ୍ତମାନ ବୁଝୁଛି ଘର ସଂସାର ଚଳାଇବା ପାଇଁ, ଦେହପା ଭଲ ରଖିବା ପାଇଁ, ଶରୀର ବିଜ୍ଞାନ, ସ୍ୱାସ୍ଥ୍ୟରକ୍ଷା, ଗୃହବିଜ୍ଞାନ ପଢ଼ିଥିଲେ ବୋଧେ ଭଲ ହୋଇଥାନ୍ତା ।"

ଡାକ୍ତରବାବୁ କହିଲେ, "ଶୁଣ, ହାଡ଼ଫୁଟି, ମିଳିମିଳା ଓ ବସନ୍ତ ମା' ନୁହନ୍ତି କିମ୍ବା ସେମାନେ ପରସ୍ପର ଭଉଣୀ ନୁହନ୍ତି ।

ଏଗୁଡ଼ିକ ଭୂତାଣୁଜନିତ ରୋଗ । ହାଡ଼ଫୁଟିର ଭୂତାଣୁକୁ କହନ୍ତି ଚିକେନ୍ ପକ୍ସ ଭାଇରସ୍ । ଏ ଭାରି ଛୁଆଁ ରୋଗ । ୧୯୫୩ ମସିହା ପର୍ଯ୍ୟନ୍ତ ଏ ରୋଗର ଭୂତାଣୁ ଧରା ପଡ଼ିନଥିଲା । ପ୍ରଥମେ ୧୯୭ ମସିହାରେ ଏହା ଜଣାପଡ଼ିଲା । ଆମେ ପିଠିରେ, ମୁହଁରେ 'ମାଙ୍କଡ଼ସା ମୁତିଛି' ବୋଲି ଯାହା କହୁ ତାହା ମଧ୍ୟ ଏହି ଭୂତାଣୁମାନେ କରିଥାଆନ୍ତି । ପ୍ରକୃତରେ ମାଙ୍କଡ଼ସା ମଣିଷ ଉପରେ ମୂତିବ କିପରି ?

ଏସବୁ ଫୋଟକା ହେଲାପରେ ରୋଗ ଚିହ୍ନିବା ସହଜ ହୋଇଥାଏ । ଜ୍ୱରରେ ପ୍ରଥମ ଦିନରେ ଫୋଟକା ବାହାରି ପଡ଼ିଲେ ହାଡ଼ଫୁଟି, ୩ ଦିନରେ ଫୋଟକା ବାହାରିଲେ ବସନ୍ତ, ୪ ଦିନରେ ନାଲି ନାଲି ଦାଗ ବାହାରିଲେ ସାଧାରଣତଃ ମିଳିମିଳା ହୋଇଥାଏ ।

ହାଡ଼ଫୁଟିର ଫୋଟକାକୁ ଚିପିଲେ ସଫା ପାଣି ବାହାରେ । ହାଡ଼ଫୁଟି ରୋଗୀ ସଙ୍ଗରେ ମିଳାମିଶା କଲେ ଦଶ ପନ୍ଦର ଦିନ ପରେ ସାଧାରଣତଃ ହାଡ଼ଫୁଟି ହୁଏ ଏବଂ ଜ୍ୱରରେ ଦିନେ ଦୁଇଦିନ ମଧ୍ୟରେ

ଫୋଟକା ବାହାରିଯାଏ । ତିନି ଚାରିଦିନ ପରେ ପ୍ରଥମ ଫୋଟକାଗୁଡ଼ିକ ମିଳାଇଯାନ୍ତି, ପୁଣି ଭୁହାକୁ ଭୁହା ନୂଆ ଫୋଟକା ବାହାରନ୍ତି । ନୂଆ ଫୋଟକା ବାହାରିଲା ବେଳେ ପୁଣି ଜ୍ୱର ହୋଇଥାଏ । ଜ୍ୱରର ଦିନେ ଦୁଇଦିନ ପୂର୍ବରୁ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ଏ ରୋଗୀଙ୍କ ସଙ୍ଗେ ମିଳାମିଶା କଲେ ସାଧାରଣତଃ ରୋଗ ଡିଏଁ । ପାଞ୍ଚ ଦଶ ବର୍ଷ ପିଲାଙ୍କର ଏ ରୋଗ ସବୁଠୁ ବେଶୀ ।

ବୟସ୍କ ଲୋକଙ୍କୁ ଏ ରୋଗ ହେଲେ ବେଶୀ ଜ୍ୱର, ବେଶୀ ଦୋଳାବନ୍ଧା ହୋଇଥାଏ । ହାଡ଼ଫୁଟି ସାଧାରଣତଃ ପେଟ, ପିଠି ଓ ଛାତିରେ ବେଶୀ ହୁଏ । ବସନ୍ତ ତ ଆଜିକାଲି ଲୋପ ପାଇଗଲାଣି, କିନ୍ତୁ ଏହା ସାଧାରଣତଃ ମୁହଁରେ ହୁଏ ।

ହାଡ଼ଫୁଟି ବେଳେ ବେଳେ ଖୁବ ସାଂଘାତିକ ହୁଏ । ଫୁସଫୁସରେ ଏହା ନିମୁନିଆ କରିପାରେ, ତଣ୍ଟିରେ ହୋଇ ଖାଇବା ପିଇବାରେ ଅସୁବିଧା ଜନ୍ମାଏ । ଆଖିରେ ହେଲେ ଠିକ୍ ଠିକ୍ ଚିକିତ୍ସା ନକଲେ ଆଖିରେ ଫୁଲ ପଡ଼ିଯାଏ । ମସ୍ତିଷ୍କ ପ୍ରଦାହ ରୋଗ ହୋଇ ଅନେକ ଶିଶୁ ମୃତ୍ୟୁମୁଖରେ ପଡ଼ନ୍ତି ।

ଏସବୁ ମୁଁ ତୁମକୁ ଡରାଇବାକୁ କହୁନାହିଁ । ମୋ କହିବାର ଉଦ୍ଦେଶ୍ୟ ତୁମର ଅନ୍ଧବିଶ୍ୱାସ ଦୂର କରିବା । ମୁନୁର ଅବସ୍ଥା ଭଲ ଅଛି । ଔଷଧ ଖାଇଲେ ସେ ସମ୍ପୂର୍ଣ୍ଣ ଭଲ ହୋଇଯିବ । ଭୂତାଣୁକୁ ମାରିବା ପାଇଁ ଭଲ ଆଧୁନିକ ଔଷଧ ବାହାରିନାହିଁ, କିନ୍ତୁ ଯନ୍ତ୍ରଣା କମେଇବା, ଜ୍ୱର କମେଇବା, ଭଲ ନିଦ ହେବା, ବାନ୍ତି ବନ୍ଦ ପାଇଁ ଡାକ୍ତରୀ ଔଷଧ ଖାଇଲେ ତିନି ଚାରି ଦିନ ମଧ୍ୟରେ ତାର ସବୁ କଷ୍ଟ ଦୂର ହୋଇଯିବ ।

ହାଡ଼ଫୁଟିରେ କୁଣ୍ଡାଇହେବା କମିବା ପାଇଁ ଦେହରେ ପାଉଡ଼ର ପକାଇବା ଦରକାର । ଉଷୁମ ପାଣିରେ ପୋଛି ଦେଇ ଫୋଟକାଗୁଡ଼ିକ ଉଷୁମ ପାଣିରେ ସେକିଲେ ଆରାମ ମିଳେ । ରୋଗର କଷ୍ଟ କମେଇବା ପାଇଁ ବହୁ ଔଷଧ ମିଳିଲାଣି । ବିବ୍ରତ ହେବା ଆଦୌ ଉଚିତ ନୁହେଁ ।”

# ଅଧାକପାଳ ମୁଣ୍ଡବିନ୍ଧା

**ପ୍ରଶ୍ନ**—ମୋର ବୟସ ୩୨ ବର୍ଷ । ସୁନ୍ଦର ସ୍ୱାସ୍ଥ୍ୟ, ବିବାହିତା । ଦୁଇଟି ପିଲାର ମାଆ । ଗତବର୍ଷ ଜନ୍ମନିୟନ୍ତ୍ରଣ ଅପରେସନ୍ ହୋଇଛି । ସ୍ୱାମୀ ବ୍ୟବସାୟ କରନ୍ତି । ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ । ମୁଁ ମନସ୍ତତ୍ତ୍ୱରେ ଏମ୍. ଏ. ପାସ୍ କରିଛି । ମୋର ରକ୍ତଚାପ. ବହୁମୂତ୍ର, ନାଳଖାଡ଼ା, ଋତୁସ୍ରାବଜନିତ କୌଣସି ପ୍ରକାର ରୋଗ ନାହିଁ । ସବୁପ୍ରକାର ପରୀକ୍ଷା ନିରୀକ୍ଷା ସରିଗଲାଣି । କିନ୍ତୁ ଗତ ଦଶବର୍ଷ ହେବ, ମାସେ, ଦୁଇମାସ, ତିନିମାସ ଅନ୍ତରରେ ମୋର ମୁଣ୍ଡପଟା ମୁଣ୍ଡବିନ୍ଧା ଲାଗି ରହୁଛି । ବିଶେଷତଃ ବାଁପଟ ନ ହେଲେ ଡାହାଣପଟ ଅଧାକପାଳ ବିନ୍ଧେ । ଏ ବିନ୍ଧା ମୁଣ୍ଡରେ ହାତୁଡ଼ି ପିଟିଲାପରି ଭୀଷଣ ଯନ୍ତ୍ରଣା ଦିଏ । ଆଖି ଉପର ବହୁତ ବିନ୍ଧେ । ସେହି ଅବସ୍ଥାରେ ବାନ୍ତି ହୋଇଗଲେ ସାମାନ୍ୟ ଭଲ ଲାଗେ । ବେଳେବେଳେ ବିନ୍ଧା ଦୁଇ ତିନିଦିନ ଧରି ଲାଗିରହେ । ଆଲୁଅକୁ ବହୁତ ଖରାପ ଲାଗେ ଏବଂ ଅନ୍ଧାରରେ ଚୁପ୍ କରି ପଡ଼ି ରହିବାକୁ ଇଚ୍ଛା ହୁଏ । ସେହି ସମୟରେ ଚାହିଁଲେ ଆଖି ଆଗରେ କଳା କଳା ଦାଗ ସବୁ ଦେଖାଯାଏ, ନୋହିଲେ ଆଖିରୁ ଜୁଳୁଜୁଳିଆ ପୋକ ବାହାରେ । ହାତଗୋଡ଼ ଝିମ୍ ଝିମ୍ ହୋଇ ନିସ୍ତେଜ ହୋଇଯାଏ । ସତେ ଯେମିତି କିଏ ଛୁଞ୍ଚି ସବୁ ଫୁଟାଉଛି । ଘନଘନ ପରିସ୍ରା ଲାଗେ । ବେଳେ ବେଳେ ଦେହରୁ ମୁଣ୍ଡରୁ ଝାଳ ବୋହିଯାଏ । ଛାତି ଧମଧମ ପଡ଼େ । ଅତି ଦୟନୀୟ ଅବସ୍ଥା ।

ଦଶବର୍ଷ ତଳେ ମୋର ଜଣେ ବାନ୍ଧବୀଙ୍କ ସହିତ ସ୍ୱାମୀଙ୍କର ଗୁପ୍ତପ୍ରଣୟ ସନ୍ଦେହ କରି କଳିତକରାଳ ପରେ ଏହି ମୁଣ୍ଡବିନ୍ଧା ଆରମ୍ଭ ହୋଇଥିଲା । ତା'ପରେ ସେଭଳି ଅବସ୍ଥା ଆଉ ନାହିଁ, କିନ୍ତୁ ଯେତେ ଚେଷ୍ଟା କଲେ ମଧ୍ୟ ମନରୁ ମୁଁ ସେ ସନ୍ଦେହ ପୋଛିପାରୁନାହିଁ ।

ମୁଁ ବହୁତ ଡାକ୍ତର, କବିରାଜ, ହୋମିଓପାଥିଙ୍କ ସହ ପରାମର୍ଶ କରିସାରିଲିଣି । କାନ-ନାକ ବିଶେଷଜ୍ଞ ଡାକ୍ତର 'ସାଇନୁସାଇଟିସ୍'

କହି ନାକରେ ଝୁଣ୍ଟି ପୁଞ୍ଚାଇ ସଫା କରିଥିଲେ । ଚକ୍ଷୁ ବିଶେଷଜ୍ଞ ଆଖିରେ ଚଷମା ଲଗାଇବାକୁ ପରାମର୍ଶ ଦେଇଛନ୍ତି । ଏଥିରେ କୌଣସି ଫଳ ମିଳନାହିଁ । ଏହାପରେ ମାନସିକ ରୋଗ ଓ ସ୍ନାୟୁରୋଗ ବିଶେଷଜ୍ଞଙ୍କ ସହିତ ପରାମର୍ଶ କରି ମୁଣ୍ଡର ଇ.ଇ.ଜି ପରୀକ୍ଷା କରିଛୁ ଏବଂ ଦିଲ୍ଲୀ ଯାଇ ମସ୍ତିଷ୍କର 'କ୍ୟାଟ ସ୍କାନ' ମଧ୍ୟ କରିଛୁ । ଦିଲ୍ଲୀରେ ମୋତେ ଏହା 'ମିଗ୍ରେନ୍' ହେଉଛି ବୋଲି କହି କେତେକ ଔଷଧ ଦେଇଛନ୍ତି । ଏ ଔଷଧ ଖାଉଥିଲେ ସାମାନ୍ୟ ଟିକେ କମୁଛି, ପୁଣି ଛାଡ଼ିଦେଲେ ଯେଉଁ କଥାକୁ ସେଇକଥା । ମୁଁ କ'ଣ ସମ୍ପୂର୍ଣ୍ଣ ଭଲ ହେବ ନାହିଁ ? ମୋର ରୋଗ ପରିବାରରେ ଏଭଳି ଦେହସୁହା ହୋଇଗଲାଣି ଯେ ମୋତେ ଯନ୍ତ୍ରଣା ହେଉଥିଲାବେଳେ ବି ସ୍ୱାମୀ କୌଣସି ଗୁରୁତ୍ୱ ନ ଦେଇ ବ୍ୟବସାୟକୁ ଚାଲିଯାଆନ୍ତି । ସାମାନ୍ୟ ସାହାଯ୍ୟ ପାଇଁ କହିଲେ 'ହିଷ୍ଟିରିଆ' କହି ଓଲଟି ବିରକ୍ତି ପ୍ରକାଶ କରନ୍ତି । ଅଜାଗା ଘା' କାହାରିକୁ ଦେଖାଇ ହୁଏନାହିଁ । ପିଲାଙ୍କ ପାଇଁ ମୁଁ କ'ଣ ଆଉ କିଛିଦିନ ଭଲରେ ବଞ୍ଚିପାରିବି ନାହିଁ ?

**ଉତ୍ତର**—୧୯୮୩ ମସିହା ସେପଟେମ୍ବର ମାସ ୨୮ ତାରିଖ । ଭାରତ-ପାକିସ୍ତାନ ମଧ୍ୟରେ ଦ୍ୱିତୀୟ କ୍ରିକେଟ ଟେଷ୍ଟମ୍ୟାଚ ପଞ୍ଜାବର ଜଳନ୍ଧର ସହରରେ ଅନୁଷ୍ଠିତ ହେଉଥାଏ । ପାକିସ୍ତାନ ଦଳ ୩୩୭ରନ କରିଥାନ୍ତି । ଭାରତର ବଡ଼ବଡ଼ ଖେଳାଳି ସୁନୀଲ ଗାଭାସ୍କର, ମହିନ୍ଦ୍ର ଅମରନାଥ, ଯଶପାଲ ଶର୍ମା, ସନ୍ଦିପ ପାଟିଲ ଭଲ ଖେଳି ନ ପାରି ପାଭିଲିଅନକୁ ଫେରିଗଲେଣି । କେବଳ ଦୃଢ଼ତାର ସହିତ ଖେଳୁଥାନ୍ତି ଅଂଶୁମାନ ଗାଇକ୍‌ୱାର୍ଡ଼ । ହଠାତ୍ ସେ ୮୫ ରନ୍ କରିଥିବାବେଳେ ଗୋଟିଏ କ୍ୟାଚ୍ ଦେଲେ । ରେଡ଼ିଓ ଶୁଣୁଥିବା, ଟେଲିଭିଜନ ଦେଖୁଥିବା ଅଗଣିତ କ୍ରିକେଟପ୍ରେମୀ ବିଷଣ୍ଣ ହୋଇଗଲେ । ଭାରତ ହାରିଯିବ ନା କ'ଣ ? କିନ୍ତୁ ପାକିସ୍ତାନର ତରୁଣ ଖେଳାଳିଙ୍କ ହାତରୁ ବଲ୍‌ଟା ଖସିଗଲା । ସେ କ୍ୟାଚଟାକୁ ଧରି ରଖିପାରିଲେ ନାହିଁ । ଗାଇକ୍‌ୱାର୍ଡ଼ ପୁନର୍ଜୀବନ ଲାଭ କଲେ ଏବଂ ଖେଳ ଶେଷଦିନ ପର୍ଯ୍ୟନ୍ତ ରହି ଦୁଇଶତକ ରନ୍ କଲେ । ଖେଳ ଅମୀମାଂସିତ ରହିଲା ।

ଏହି ଖେଳରେ ପାକିସ୍ତାନ ଦଳ ଭାରତର ତିନିଗୋଟା କ୍ୟାଚ୍ ଛାଡ଼ି ଦେଇଛନ୍ତି । ସେହିଭଳି ଭାରତୀୟ ଦଳ ପାକିସ୍ତାନର ତିନି ଗୋଟା କ୍ୟାଚ୍ ମଧ୍ୟ ଛାଡ଼ି ଦେଇଛନ୍ତି । କ୍ରିକେଟ ଖେଳରେ ଧରୁ ଧରୁ ହାତରୁ ବଲ୍ ଖସିଯିବା (କ୍ୟାଚ୍ ଛାଡ଼ିଦେବା) ଏକ ସାଧାରଣ ଘଟଣା । ସବୁ ପ୍ରତିଷ୍ଠିତ ଖେଳାଳି, ସବୁ ନୂଆ ଖେଳାଳି ଏହା ଅଙ୍ଗେ ନିଭାଇଛନ୍ତି । ସେହିଭଳି 'ମୁଣ୍ଡବିନ୍ଧା' ସବୁ ମଣିଷଙ୍କର ଅଙ୍ଗେନିଭା କଥା । ଜୀବନରେ କେତେବେଳେ କେଉଁଠି କାହାର ମୁଣ୍ଡବିନ୍ଧା ନ ହୋଇଛି, କେହି ବାହାଦୁର କରି କହି ପାରିବେ ନାହିଁ । ମୁଣ୍ଡବିନ୍ଧା ଏକ ସାଧାରଣ ଘଟଣା । ବାରମ୍ବାର ମୁଣ୍ଡବିନ୍ଧା ପାଇଁ ଚିକିତ୍ସିତ ହେଉଥିବା ଲୋକଙ୍କର ସଂଖ୍ୟା ବହୁତ ବେଶୀ । ଗଣନାରୁ ଜଣାପଡ଼ିଛି, ଗୋଟିଏ ଅଞ୍ଚଳରେ ଲୋକମାନଙ୍କର ମୁଣ୍ଡବିନ୍ଧା ଇତିହାସ ନେଲେ ସେଥିରୁ ଶତକଡ଼ା ୭୫ରୁ ୯୫ ପର୍ଯ୍ୟନ୍ତ ଲୋକଙ୍କର ମୁଣ୍ଡବିନ୍ଧା ହୋଇଥିବ ବୋଲି ଜଣାପଡ଼ିବ ।

ମୁଣ୍ଡବିନ୍ଧା ସାମାନ୍ୟ ହୋଇପାରେ କିମ୍ବା ଭୀଷଣ ହୋଇପାରେ । ଏହା କେତେ ସାଂଘାତିକ ରୋଗ ଯୋଗୁ ହୋଇପାରେ କିମ୍ବା କିଛି ରୋଗ ନଥାଇ ମାନସିକ ଅବସାଦ ହେତୁ ହୋଇପାରେ । ଏ ଦୁଇଟାର ମଝାମଝି ଜ୍ୱର, ସର୍ଦ୍ଦି, କାଶ ପ୍ରଭୃତି ସାଧାରଣ ରୋଗ ଯୋଗୁ ମଧ୍ୟ ହୋଇପାରେ ।

ମୁଣ୍ଡବିନ୍ଧା ହୁଏ କାହିଁକି ?

କେତେଗୁଡ଼ିଏ କାରଣରୁ ଏହା ହୋଇଥାଏ । ଖପୁରି ଭିତରେ ଥିବା କିମ୍ବା ଖପୁରି ବାହାରେ ଥିବା ଧମନୀମାନେ ଫୁଲି ଟାଣି ହୋଇ ଅଧିକ ଧକ୍‌ଧକ୍ ହୁଅନ୍ତି । ମସ୍ତିଷ୍କ ଭିତରେ ଶିରା କିମ୍ବା ମସ୍ତିଷ୍କକୁ ଘୋଡ଼ାଇଥିବା ପରଦାଗୁଡ଼ିକ ଟାଣିହୋଇ ଯନ୍ତ୍ରଣା ଦିଅନ୍ତି ।

ମସ୍ତିଷ୍କ ଭିତରେ ସ୍ନାୟୁ କିମ୍ବା ସୁଷୁମ୍ନାକାଣ୍ଡର ସ୍ନାୟୁ ରୋଗ ରୂପରେ ସ୍ଥାନାନ୍ତରିତ ହୋଇ କିମ୍ବା ଟାଣିହୋଇ ଯନ୍ତ୍ରଣା ଦିଅନ୍ତି । ବେଳେ ବେଳେ ଦୁର୍ଘଟଣା କିମ୍ବା ଆଘାତ ହେତୁ ଖପୁରି ଉପରେମାଂସପେଶୀ ଛିଡ଼ି କିମ୍ବା ବେକମୂଳର ମାଂସପେଶୀ ଛିଡ଼ି ମୁଣ୍ଡବିନ୍ଧା କରନ୍ତି । ବେଳେବେଳେ ମସ୍ତିଷ୍କ ଭିତରେ ଟିଉମର ହୋଇ ମୁଣ୍ଡରେ ଥିବା ଜଳୀୟ ପଦାର୍ଥର

ଗୃହ ବଢ଼ାଇଦିଏ । ସେଥିପାଇଁ ମସ୍ତିଷ୍କକୁ ଘୋଡ଼ାଇଥିବା ପର୍ଦ୍ଦାମାନେ ଫୁଲି ଯାଇ ମୁଣ୍ଡବିନ୍ଧା କରନ୍ତି ।

ଏହା ବ୍ୟତୀତ ମୁଣ୍ଡ ଖପୁରି ଭିତରେ ଥିବା ପୋଲା ହାଡ଼-ଗୁଡ଼ିକରେ ପାଣି ଜମିଲେ ମୁଣ୍ଡବିନ୍ଧା ହୋଇଥାଏ । ଏହାକୁ ଡାକ୍ତରୀ ଭାଷାରେ 'ସାଇନୁସାଇଟିସ' କହନ୍ତି । ଏଭଳି ବିନ୍ଧା ସକାଳୁ ଶେଯରୁ ଉଠିଲା ବେଳେ ବେଶୀ ହୁଏ ଏବଂ ଦିନସାରା କାମଦାମ କଲେ ବିନ୍ଧା ନଥାଏ । ଆଖିର ଦୃଷ୍ଟିଶକ୍ତି କମିଗଲେ, ଗ୍ଲୁକୋମା ପ୍ରଭୃତି ଚକ୍ଷୁ ରୋଗ ହେଲେ କପାଳ ଓ ଆଖି ଉପରେ ବିନ୍ଧା ଲାଗିରହେ । ଏଭଳି ଯନ୍ତ୍ରଣା ଆଖି ଦୋଷଥିଲେ, ବହୁତ ଲେଖାପଢ଼ା କଲେ କିମ୍ବା ବୁଣା-ବୁଣି ପ୍ରଭୃତି ସୂକ୍ଷ୍ମକାମ କଲେ ବଢ଼େ । ସାଧାରଣତଃ ଆଖି ପରୀକ୍ଷା କରି ଚଷମା ପିନ୍ଧିଲେ ମୁଣ୍ଡର ଏହି ବିନ୍ଧା କମିଯାଏ । ଗ୍ଲୁକୋମା ଥିଲେ ଅସ୍ତ୍ରୋପଚାର ଦରକାର ପଡ଼ିଥାଏ ।

ଏସବୁ ରୋଗ ଯୋଗୁ ମୁଣ୍ଡବିନ୍ଧା ହୁଏ ଦେଲେ କିଛି ରୋଗ ନ ଥାଇ ମଧ୍ୟ ମାନସିକ ଉତ୍କଣ୍ଠା, ଅବସାଦ ଯୋଗୁ ମୁଣ୍ଡବିନ୍ଧା ହୋଇ-ଥାଏ । ଏଭଳି ମୁଣ୍ଡବିନ୍ଧାର କୌଣସି ନିର୍ଦ୍ଦିଷ୍ଟ ଲକ୍ଷଣ ନାହିଁ । ଏହା ରୋଗୀର ବେକମୂଳ ମାଂସପେଶୀ ଏବଂ ଖପୁରି ଉପରେ ଥିବା ମାଂସପେଶୀ ଓ ଧମନୀର ଅସ୍ୱାଭାବିକ ସଙ୍କୁଚନ-ପ୍ରସାରଣ ହେତୁ ହୋଇଥାଏ ।

ଡାକ୍ତର ପରୀକ୍ଷା କରିସାରିଲାପରେ ଆଖି, ପୋଲା ହାଡ଼ରେ ପାଣି ଜମିବା, ଦାନ୍ତ ରୋଗ, ମସ୍ତିଷ୍କ ପରଦା ପ୍ରଦାହ (ମେନିନ୍‌ଜାଇଟିସ୍) ମସ୍ତିଷ୍କ ଅର୍ବୁଦ (ବ୍ରେନ ଟ୍ୟୁମର) ମସ୍ତିଷ୍କରେ ରକ୍ତସ୍ରାବ, ଉଚ୍ଚରକ୍ତଚାପ-ଜନିତ ମୁଣ୍ଡବିନ୍ଧା ପ୍ରଭୃତି ସାଂଘାତିକ ରୋଗ ସହଜରେ ଜାଣିପାରନ୍ତି ।

କିନ୍ତୁ ମୁଣ୍ଡବିନ୍ଧା ଯେତେବେଳେ ଏଭଳି କୌଣସି କାରଣ ନ ଥାଇ ପୁରାତନ, ଜଟିଳ ହୋଇଯାଏ, ବାରମ୍ବାର ହୁଏ, ପରୀକ୍ଷାପରେ ଉପର୍ଯ୍ୟୁକ୍ତ କୌଣସି ରୋଗର ଲକ୍ଷଣ ପ୍ରକାଶ ପାଏ ନାହିଁ ତେବେ ତାହା ଡାକ୍ତରଙ୍କ ପାଇଁ ଏକ ସମସ୍ୟା ହୋଇଯାଏ । ସେଭଳି ମୁଣ୍ଡବିନ୍ଧା ମଧ୍ୟରେ ଅଧାକପାଳି ବିନ୍ଧିବା (ମିଗ୍ରେନ) ଓ ଅବସାଦଗ୍ରସ୍ତ ମୁଣ୍ଡବିନ୍ଧା

(ଟେନସନ୍ ହେଡ଼ାକ୍) ପ୍ରଧାନ । ମୋର ବିଶ୍ୱାସ, ଆପଣ ଦୁଇଟିଯାକ ମୂତ୍ରବନ୍ଧାର ଶିକାର ହୋଇଛନ୍ତି ।

ଅଧାକପାଳ ବିନ୍ଧିବା (ମିଗ୍ରେନ୍) ଧମନୀଜନିତ ରୋଗ । ମସ୍ତିଷ୍କ ଧମନୀମାନେ ଅସ୍ୱାଭାବିକଭାବେ ସଙ୍କୁଚିତ-ପ୍ରସାରିତ ହେଲେ ସାଧାରଣତଃ ମିଗ୍ରେନ ହୋଇଥାଏ ।

ଏହି ଶ୍ରେଣୀର ଲୋକମାନେ ବୁଦ୍ଧିଜୀବୀ, ଅତିମାତ୍ରାରେ କାର୍ଯ୍ୟଦକ୍ଷ ଏବଂ ଠିକ୍ ସମୟରେ ଠିକ୍ ଠିକ୍ କାମ କରିଥାନ୍ତି । ସାମାନ୍ୟ ଭୁଲରେ ଭ୍ରୂକୁଞ୍ଚିତ କରି ଅଗ୍ନିଶର୍ମା ହୋଇଯାଆନ୍ତି ଏବଂ ବାହାରେ ରାଗି ନ ପାରିଲେ ମଧ୍ୟ ଭିତରର ରାଗ ମସ୍ତିଷ୍କ ଧମନୀ ଉପରେ ପ୍ରଭାବ ପକାଇଥାଏ । ଏମାନେ ଅତିମାତ୍ରାରେ ସ୍ୱାଭିମାନୀ ଏବଂ ଉଚ୍ଚମନା । ତୀବ୍ର ଯନ୍ତ୍ରଣା ସମୟରେ ମଧ୍ୟ ଏମାନେ କାର୍ଯ୍ୟ କରି ଚାଲିଥାଆନ୍ତି ।

ଏ ରୋଗ ଏତେ ପୁରୁଣା ଯେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଏରେଟସ୍ ଏହି ରୋଗର ସମସ୍ତ ଲକ୍ଷଣ ଲିପିବଦ୍ଧ କରିଥିଲେ ।

ଭାରତର ପ୍ରସିଦ୍ଧ ଋଷିସୁଶ୍ରୁତ 'ସୁଶ୍ରୁତ ସଂହିତା'ରେ ଏ ରୋଗର ଲକ୍ଷଣ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । କିନ୍ତୁ ଗତ ଦୁଇହଜାର ପାଞ୍ଚଶହ ବର୍ଷ ମଧ୍ୟରେ ଉନ୍ନତ ବୈଜ୍ଞାନିକ ଗବେଷଣା ସତ୍ତ୍ୱେ ଏ ରୋଗର କାରଣ ଏ ପର୍ଯ୍ୟନ୍ତ ଜଣାପଡ଼ିନାହିଁ । କାରଣ ଜଣା ନ ପଡ଼ିବାରୁ ଚିକିତ୍ସାଟା ଅନ୍ଧାରରେ ବାଡ଼ି ବୁଲାଇଲା ଭଳି ହେଉଛି । ଲକ୍ଷ୍ୟସ୍ଥଳୀ ଭେଦ କରିବା ସହଜ ନୁହେଁ ।

ମିଗ୍ରେନ୍ ରୋଗୀଙ୍କର ସ୍ୱାସ୍ଥ୍ୟ ଖୁବ୍ ଭଲ ଏବଂ ପରୀକ୍ଷାରୁ କୌଣସି ପ୍ରକାର ରୋଗ ନିର୍ଣ୍ଣୟ କରିହୁଏ ନାହିଁ । ରୋଗୀର ମୂତ୍ରବନ୍ଧା ଇତିହାସ ଏବଂ ସୁବିସ୍ତୃତ ପରୀକ୍ଷାରେ କିଛି ନ ବାହାରିଲେ ସାଧାରଣ ମିଗ୍ରେନ୍ ବୋଲି ଚିହ୍ନାଯାଏ । ଏହି ରୋଗ ବୁଦ୍ଧିଜୀବୀ ମହଲରେ ବେଶୀ ହେଉଥିବାରୁ ଏହା 'ବୁଦ୍ଧିମତ୍ତାର ମୂଲ୍ୟ' ହିସାବରେ ବିଚାର କରାଯାଇପାରେ । ଏହା ଗୋଲାପ ଫୁଲ କଣ୍ଟା ଭଳି । ଅତି ବୁଦ୍ଧିମାନ ଲୋକଙ୍କ ଔଦ୍ଧତ୍ୟରୁ ରକ୍ଷା ପାଇବା ପାଇଁ ପ୍ରକୃତି 'ଗୋଲାପ ଫୁଲରେ କଣ୍ଟା' ଭଳି ଏହା ରଖିଛି ।

ମାନସିକ ଅବସାଦ ଯୋଗୁ ମୁଣ୍ଡବିନ୍ଧା ମଧ୍ୟ ଏହିଭଳି । ପରୀକ୍ଷାରୁ କୌଣସି ପ୍ରକାର ରୋଗ ନିର୍ଣ୍ଣିତ୍ ହୁଏ ନାହିଁ ।

ଏଭଳି ରୋଗୀମାନେ ସାଧାରଣତଃ ଦୁଧ, ଛେନା ଖାଇବା ଉଚିତ ନୁହେଁ । ସରଳ ସାତ୍ତ୍ୱିକ ଆହାର, ଈଶ୍ୱର ବିଶ୍ୱାସ, ପ୍ରାତଃଭ୍ରମଣ, ଶୀର୍ଷାସନ ରୋଗ ଦୂରକରିବାରେ ପ୍ରଭୁତ ସାହାଯ୍ୟ କରିଥାଏ । ପ୍ରତିଦିନ ଅଁଳା ଫଳ ତିନୋଟି ଚୋବାଇ ଖାଇଲେ ଏଭଳି ମୁଣ୍ଡବିନ୍ଧା ହୁଏ ନାହିଁ । ଏ ରୋଗ ହେଉଥିବାବେଳେ ଯନ୍ତ୍ରଣା କମାଇବାକୁ ବହୁ ଡାକ୍ତରୀ ଔଷଧ ବାହାରିଲାଣି ଏବଂ ଆଉ ନ ହେବାକୁ ମଧ୍ୟ କେତେକ ଔଷଧ ସବୁଦିନେ ଖାଇବା ଦରକାର, କିନ୍ତୁ ମାନସିକ ଅସ୍ଥିରତାରୁ ମୁକ୍ତ ଏ ରୋଗ ଭଲ କରିବାରେ ବହୁ ସାହାଯ୍ୟ କରିଥାଏ ।

ମୁଣ୍ଡବିନ୍ଧା କମେଇବାକୁ ଡାକ୍ତରୀ ବଟିକା ଖାଲି ପେଟରେ ଖାଇବା ଆଦୌ ଉଚିତ ନୁହେଁ ।

ବର୍ତ୍ତମାନର ପରିବର୍ତ୍ତିତ ପାରିବାରିକ ପରିସ୍ଥିତିରେ ଆପଣଙ୍କର ଅବସାଦଗ୍ରସ୍ତ ହେବା ଆଦୌ ଉଚିତ ନୁହେଁ । "ବୈକୁଣ୍ଠ ସମାନ ଅଟେ ଆହା ସେହି ଘର, ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।" ଗୋଟିଏ ହାତରେ ତାଳି ବାଜେ ନାହିଁ । ତେଣୁ ଆପୋଷ ସମାଧାନ କରି ଆପଣ ଶାନ୍ତିରେ ରହନ୍ତୁ । କୌଣସି ପରୀକ୍ଷାରୁ ରୋଗ ବାହାରୁ ନ ଥିବାରୁ ଭୟ କରିବାର କିଛି କାରଣ ନାହିଁ । ଆପଣ ସମ୍ପୂର୍ଣ୍ଣ ଭଲ ହୋଇଯିବେ ।

ମନ ଚୋହର ନିଜ ଗୁରୁ
ଉଦ୍ଧବ କେତେ ତୁ ପଚ୍ଛୁରୁ ।



---

ଯେଉଁମାନେ ଦୈନନ୍ଦିନ ଆବଶ୍ୟକତା ପୂରଣ କରିବାପାଇଁ ଧର୍ମାଚରଣକୁ ମାଧ୍ୟମରୂପେ ସ୍ୱୀକାର କରନ୍ତି, ସେହିମାନେ ହିଁ ହେଲେ ନାସ୍ତିକ ।

—ଟଲ୍‌ଷ୍ଟୟ

# ସ୍ମୃତିଶକ୍ତି

**ପ୍ରଶ୍ନ**—ମୋର ବୟସ ୨୦ ବର୍ଷ । ମୁଁ ବର୍ତ୍ତମାନ ବି. ଏ. ପଢ଼ୁଅଛି । ଗତ ଦୁଇ ବର୍ଷ ହେବ ଯାହା ପଢ଼ିଲେ ମୋର ମନେ ରହୁନାହିଁ । ମୋର ଆଖି ଭିତରକୁ ପଶିଯାଉଅଛି । ଆଖିତଳେ କଳା କଳା ଦାଗ ହୋଇଯାଉଛି । କୁସଙ୍ଗରେ ପଡ଼ି ବାରମ୍ବାର ହସ୍ତମୈଥୁନ ଦ୍ୱାରା ମୋର ଶାରୀରିକ ଶକ୍ତି ବହୁତ ଊଣା ହୋଇଯାଇଅଛି । ମୋତେ ସବୁବେଳେ ଡର ମାଡ଼ୁଛି । ମଝିରେ ମଝିରେ ମୁଣ୍ଡରେ ଏବଂ ଛାତିରେ ତୀବ୍ର ଯନ୍ତ୍ରଣା ଅନୁଭବ କରୁଛି । ଏଥିପାଇଁ ମୁଁ କବିରାଜ, ହୋମିଓପାଥି ଓ ଏଲୋପାଥି ବ୍ୟବହାର କରିସାରିଲିଣି । ଏଲୋପାଥି ଡାକ୍ତର ମୋର ବ୍ଲଡ଼ପ୍ରେସର ଅଧିକ ଅଛି ବୋଲି କହୁଛନ୍ତି । ଯେତେଥର ମାପିଲେ ବ୍ଲଡ଼ପ୍ରେସର ୧୨୦/୮୦ ରହୁଛି । ମୋତେ ଏବେ ଜଣେ ଡାକ୍ତର କହିଲେ, ମୁଁ ମାନସିକ ବ୍ୟାଧି ଭୋଗ କରୁଛି । ମୋଭଳି ବୟସର ଲୋକଙ୍କର କ'ଣ ମାନସିକ ବ୍ୟାଧି ହୁଏ ? ହସ୍ତମୈଥୁନର ଶରୀର ଉପରେ ପଡ଼ୁଥିବା କୁଫଳରୁ କିପରି ରକ୍ଷା ମିଳିବ ଏବଂ ମୋର ମନେ ରଖିବା ଶକ୍ତି ବଢ଼ିବ କିପରି ? ଏବେ ମୁଁ ମୁଣ୍ଡରେ ଘି-କୁଆଁରି ଘଷୁଛି ଏବଂ ବ୍ରାହ୍ମୀ ତେଲ ଲଗାଉଛି ।

**ଉତ୍ତର**—ଯୁକ୍ତରାଷ୍ଟ୍ର ଆମେରିକାରେ କାରଲ ସିସୋର ନାମରେ ଜଣେ ବଡ଼ ମନସ୍ତତ୍ତ୍ୱବିତ୍ ଥିଲେ । ତାଙ୍କ ମତରେ ଜଣେ ସାଧାରଣ ମଣିଷ, ତାହାର ଯେତିକ ମନେରଖିବା କଥା ସେଥିରୁ ମାତ୍ର ୧୦ ଭାଗ ମନେରଖନ୍ତି ଏବଂ ଅବଶିଷ୍ଟ ୯୦ ଭାଗ ମନେରଖିବାର ନିୟମ ଜାଣି ନଥିବାରୁ ଭୁଲିଯାନ୍ତି । ତୁମେ କ'ଣ ନିଜକୁ ଜଣେ ସାଧାରଣ ମଣିଷ ବୋଲି ଭାବୁଛ ? ଯଦି ଭାବୁ ନଥାଅ ତେବେ ପ୍ରାକୃତିକ ନିୟମ ଅନୁସାରେ ମନେରଖିବାକୁ ଚେଷ୍ଟା କଲେ ତୁମେ ସବୁ ବିଷୟ ଯଥା— ପାଠପଢ଼ା, ବେପାର ବଣିଜ, କଥାବାର୍ତ୍ତାରେ ଆବଶ୍ୟକ ହେଉଥିବା ଦରକାରୀ ତଥ୍ୟ ସବୁ ମନେରଖି ପାରିବ । ମନେରଖିବାରେ ଯେଉଁ

ସୂକ୍ଷ୍ମ ଉପାୟ ଅଛି, ଯେଉଁଗୁଡ଼ିକ ହେଲା—ମନେ ରଖିବା ବସ୍ତୁ ସମ୍ବନ୍ଧରେ ଧାରଣା, ସେହି ବିଷୟକୁ ବାରମ୍ବାର ଆବୃତ୍ତି କରି ମନେପକାଇବା ଏବଂ ସେ ବିଷୟରେ ତୁମେ ଜାଣିଥିବା କୌଣସି ବିଷୟ ସହିତ ତା'ର କ'ଣ ସାମଞ୍ଜସ୍ୟ ଅଛି, ବାରମ୍ବାର ସେହି ବିଷୟରେ ଭାବିବା ।

ଆମ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ସ୍ମରଣଶକ୍ତି ଅତି ପ୍ରଖର ଥିଲା । ସବୁ କଥା ତାଙ୍କ ମନରେ ପାଣିରେ ଗାର ଭଳି ନରହି ଲୁହାରେ ଗାର ଭଳି ରହୁଥିଲା । କଂଗ୍ରେସ ଅଧିବେଶନ ସମୟରେ ଜନଗହଳି, ବିଭିନ୍ନ ନେତାଙ୍କର ଯିବାଆସିବା, ତାଙ୍କ ସହିତ ଆଲୋଚନା ସତ୍ତ୍ୱେ ସେ ନିରବଚ୍ଛିନ୍ନ ଭାବରେ ଯେ କୌଣସି ଖଣ୍ଡେ ପୁସ୍ତକ ପଢ଼ି ଶେଷକରି ଦେଇ ପାରୁଥିଲେ । ବାହାରର ଗଣ୍ଡଗୋଳ, ଘାତ-ପ୍ରତିଘାତ ତାଙ୍କ ଚିତ୍ତ-ଶୃଙ୍ଖଳା ସୃଷ୍ଟି କରିପାରୁ ନଥିଲା । ଏପରିକି ଅରେ ବାହାର ବର୍ଷା ଏବଂ ଝଡ଼ର ଘଡ଼ଘଡ଼ିର ଶବ୍ଦ ସେ ଶୁଣିପାରି ନଥିଲେ । ଏଥିରେ କହିବା ବାହୁଲ୍ୟ ଯେ, ସେ ଯାହା ପଢ଼ୁଥିଲେ ତାହା ସଙ୍ଗେ ସଙ୍ଗେ ମନେ ରଖୁଥିଲେ । ଆମେରିକାର ଜଣେ କୋଟିପତି ବଣିକ ଇଉଜିନ ଗ୍ରେସଙ୍କ ମତରେ—ଭାବପ୍ରବଣତାରେ ଭାସି ନଯାଇ କୌଣସି କାର୍ଯ୍ୟରେ ଗଭୀର ମନୋଯୋଗ କେବଳ ସ୍ମରଣଶକ୍ତି ବଢ଼ାଇଥାଏ । ସେଥିପାଇଁ ସେ କହନ୍ତି, ଦିନ ଦିନ ଧରି ଅବଚେତନ ମନରେ କୌଣସି କାର୍ଯ୍ୟକରିବା, ପାଠପଢ଼ିବା ବା ଲେଖିବା ପରିବର୍ତ୍ତେ ଗଭୀର ଅଭିନିବେଶ ସହିତ ପାଞ୍ଚ ମିନିଟ ପାଠ ପଢ଼ିବା କିମ୍ବା କାର୍ଯ୍ୟ କରିବା ସ୍ମରଣଶକ୍ତି ବୃଦ୍ଧିରେ ସାହାଯ୍ୟ କରିଥାଏ । ଏ ବିଷୟରେ ଗୋଟିଏ ସୁନ୍ଦର ଗଳ୍ପ ଅଛି । ବିଖ୍ୟାତ ବୈଜ୍ଞାନିକ ଟମାସ୍ ଏଡ଼ିସନଙ୍କୁ ସମସ୍ତେ ଜାଣନ୍ତି । ସେ ସିନେମା, ଗ୍ରାମଫୋନ୍, ବିଜୁଳିବତୀର ବ୍ୟବହାର ପ୍ରଭୃତି ଅନେକ ଯୁଗାନ୍ତକାରୀ ଉଦ୍ଭାବନ କରିଛନ୍ତି । ତାଙ୍କର ରହୁଥିବା ସହରଠାରୁ ୧୦ ମାଇଲ ଦୂରରେ ସେ ଏକ ବିଜୁଳି ବଲ୍‌ବ୍‌ର କାରଖାନା କରିଥିଲେ । ତାଙ୍କର ୧୭ ଜଣ ସହକାରୀ ଦୈନିକ ସେହିବାଟ ଦେଇ ପାୟ ୬ମାସ କାଳ ସେ କାରଖାନାକୁ ଯାଉଥିଲେ । ସେହି ବାଟରେ ଗୋଟିଏ ଚେରିକୋଳି ଗଛ ବେଶ୍ ଫୁଲଫଳରେ ଭରି ରହିଥିଲା । ଏଡ଼ିସନ୍ ଯେତେବେଳେ ଏହି କୋଳି ଗଛ ସମ୍ବନ୍ଧରେ ତାଙ୍କର ସହକାରୀମାନଙ୍କୁ

ପ୍ରଶ୍ନ କଲେ, ସେମାନଙ୍କ ମଧ୍ୟରୁ ଜଣେ କେହି ସେ କୋଳ ଗଛ ଥିବା ବିଷୟରେ କହିପାରିଲେ ନାହିଁ । ଏହି ସାଧାରଣ ପରୀକ୍ଷାରୁ ସେ ଏକ ବୈଜ୍ଞାନିକ ସତ୍ୟର ଉପସ୍ଥାପନ କଲେ । ସେ କହିଲେ ଯେ, ସାଧାରଣ ନଣିଙ୍କର ଆଖି ଯେତେ ଜିନିଷ ଦେଖେ, ମସ୍ତିଷ୍କ ତାହାର ହଜାର ଭାଗରୁ ଭାଗେ ମଧ୍ୟ ମନେରଖିପାରେ ନାହିଁ । ଏଥିରୁ ଜଣାପଡ଼େ, ଆମମାନଙ୍କର ପର୍ଯ୍ୟବେକ୍ଷଣ ଶକ୍ତି କେତେ ନଗଣ୍ୟ । ଆମକୁ ନବ ଦଶଜଣ ଲୋକଙ୍କୁ ଚିହ୍ନାଇ ଦିଆଯାଏ, ହୁଏତ ୩୦ ମିନିଟ ପରେ ଆମର ଆଠଜଣଙ୍କର ନାମ ମନେ ନ ରହିପାରେ, କାରଣ ଆମ୍ଭେମାନେ ଯେତିକି ମନଦେଇ ମନେରଖିବା କଥା, ସେତିକି ମନଦେଇ ମନେରଖି ପାରୁନା ।

ଆମେ ପ୍ରକୃତରେ ଆଖିରେ ନଦେଖି ମସ୍ତିଷ୍କରେ ଦେଖିଥାଉ । ଏହାର ସରଳାର୍ଥ ଏହି ଯେ, ମସ୍ତିଷ୍କ ଯେଉଁ କାର୍ଯ୍ୟର ଖବର ନ କରି-ପାରେ ଆଖି ତାହା ଦେଖି ମଧ୍ୟ ଦେଖିପାରେ ନାହିଁ, ତେଣୁ ମନେ ରହେ ନାହିଁ । ଫଳେପରେ ମନେ ରଖିବାକୁ ହେଲେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ନିୟମ ପ୍ରତି ଦୃଷ୍ଟି ଦେବାକୁ ହେବ । ସେଗୁଡ଼ିକ ହେଲା—ମନେ ରଖିବା ବସ୍ତୁ ପ୍ରତି ଗଭୀର ଅନ୍ତର୍ଦୃଷ୍ଟି ଏବଂ ସେ ବିଷୟରେ ସମୁଚିତ ଧାରଣା, ପୁନରାବୃତ୍ତି ଏବଂ ସେହି ବସ୍ତୁର ନିଜେ ମନେରଖିଥିବା ବସ୍ତୁ ସହିତ ସାମଞ୍ଜସ୍ୟ ଓ ସମ୍ବନ୍ଧ । ପାଠ୍ୟପୁସ୍ତକ ମନେ ରଖିବା ପାଇଁ ଗଭୀର ମନୋନିବେଶ ଦରକାର । ମନେରଖିବା ପୂର୍ବରୁ କୌଣସି ଜିନିଷକୁ ଠିକ ଠିକ୍ ଦେଖିବା ଦରକାର । ଯେତେବେଳେ ଆମେମାନେ କ୍ୟାମେରାରେ କୌଣସି ଫଟୋ କୁହୁଡ଼ି ଥିଲାବେଳେ ଉଠାଉ, ଏହା ଠିକ୍ ଉଠିପାରେ ନାହିଁ । ସେହିଭଳି କୁହୁଡ଼ିଆ ମନରେ ପଢ଼ିଲେ ଏହା ମନେ ରହେନାହିଁ । ବେଳେ ବେଳେ ବହିକୁ ଗୁନ୍ଥି ପାଠ ପଢ଼ିଲେ ମନ ଇଆଡ଼େ ସିଆଡ଼େ ଭାବନାରେ ବୁଡ଼ି ରହେ । ସେହିଭଳି ସମୟରେ ବଡ଼ପାଟିରେ ପଢ଼ିବା ଦରକାର । ଆବ୍ରାହାମ ଲିଙ୍କନ, ଆଶୁତୋଷ ମୁଖାର୍ଜି ପ୍ରଭୃତି ମନୀଷୀମାନେ ଏହିଭଳି ଅଭ୍ୟାସ କରୁଥିଲେ । ମନେ ରଖିବା ପାଇଁ କୌଣସି ଜିନିଷ ଦେଖିବା, ଶୁଣିବାଠାରୁ ଭଲ । କାରଣ ଆଖିଠାରୁ ମସ୍ତିଷ୍କକୁ ଯେଉଁ ସ୍ନାୟୁ ଯାଇଛି, ତାହା କାନଠାରୁ ମସ୍ତିଷ୍କକୁ ଯାଇଥିବା ସ୍ନାୟୁଠାରୁ ୨୫ ଗୁଣ ଅଧିକ ।

ପୁନରାବୃତ୍ତି ଅଧିକ ମନେରଖିବାରେ ସାହାଯ୍ୟ କରିଥାଏ । ପୂର୍ବ-କାଳରେ ଆମର ମୁନିଋଷିମାନେ ବେଦ, ଉପନିଷଦ ଭଳି ବିରାଟ ଗ୍ରନ୍ଥକୁ ମନେରଖି ଆବୃତ୍ତି କରୁଥିଲେ । ଏବେ ମଧ୍ୟ ସଂସ୍କୃତ ପଣ୍ଡିତ ଓ ପାଲି ଗାୟକମାନେ ବିଭିନ୍ନ ବିଷୟ ଅକ୍ଳେଶରେ ଆବୃତ୍ତି କରିପାରନ୍ତି । ଆଉ ଗୋଟିଏ ସାଧାରଣ କଥା—ଆମେ ଯାହା ମନେରଖୁ ତାହା ସାଧାରଣତଃ ଆଠ ଘଣ୍ଟା ପରେ ଭୁଲି ହୋଇଯାଏ । ତେଣୁ ଆଠଘଣ୍ଟାକୁ ଆଠଘଣ୍ଟା ମନେ ପକାଇଲେ ଅଧିକ ମନେରହେ । ଏକ ସମୟରେ ଅଧିକ ସମୟ ଆବୃତ୍ତି କରିବା ଅପେକ୍ଷା ସେହି ବିଷୟକୁ ବିଭିନ୍ନ ସମୟରେ ମନେ ପକାଇବା ଭଲ । ପ୍ରଥମ ଆଠଘଣ୍ଟା ପରେ ଥରେ ମନେ ପକାଇଲେ ଏହା ପ୍ରାୟ ତିରିଶ ଦିନ ମନେରହେ ।

ଆମେ ଯେଉଁ ବିଷୟ ମନେରଖିବାକୁ ଚାହୁଁ, ସେହି ବିଷୟର ଆମର ଆଗରୁ ମନେ ରଖିଥିବା ବିଷୟ ସହିତ ସାମଞ୍ଜସ୍ୟ କ'ଣ ଅଛି, ମନେ ପକାଇବା ଉଚିତ—ଯଥା ଲାଲବାହାଦୁର ଶାସ୍ତ୍ରୀଙ୍କ ମୃତ୍ୟୁ ଭାରତ ପାକିସ୍ତାନ ଯୁଦ୍ଧ ସମୟରେ ହୋଇଥିଲା, ଇତ୍ୟାଦି । ଏହିଭଳି ଅଭ୍ୟାସ କଲେ ସ୍ମରଣ ଶକ୍ତିର ଉନ୍ନତି ହୋଇଥାଏ ।

ଏହା ସବୁ ହେଲା ଏକ ସାଧାରଣ ଲୋକର କଥା । କିନ୍ତୁ କେତେକ ରୋଗରେ ସ୍ମରଣ ଶକ୍ତି ଆପେ ଆପେ କମିଯାଏ । ପିଲାଦିନେ ମସ୍ତିଷ୍କ ପ୍ରଦାହ ରୋଗ (Enceph'itis meningjtis) ହେଲେ ବହୁ ପିଲାଙ୍କର ପରବର୍ତ୍ତୀ କାଳରେ ସ୍ମରଣ ଶକ୍ତି କମିଯାଏ । ଏହି ରୋଗ ହେଲେ ଭୀଷଣ ଜରହୁଏ । ପିଲା କିଛି ସମୟ ଅଚେତ୍ ହୋଇଯାଏ, ବେଳେ ବେଳେ ବାତମାରେ ଏବଂ ପରବର୍ତ୍ତୀ କାଳରେ ରୋଗ ଭଲ ହେଲାପରେ ପିଲାର ମସ୍ତିଷ୍କର କାର୍ଯ୍ୟକାରିତା ଶକ୍ତି କମିଯାଏ । ଏଭଳି କାରଣରୁ ଯେଉଁ ସ୍ମରଣଶକ୍ତି କମିଯାଏ ତାହା ସୁଷମ ଖାଦ୍ୟ, ଉପଯୁକ୍ତ ବ୍ୟାୟାମ, ଭିଟାମିନ ଇତ୍ୟାଦି ଖାଇଲେ ବହୁ ପରିମାଣରେ ବୃଦ୍ଧି ପାଏ । ଯେଉଁ ଲୋକଙ୍କର ମୃଗୀ ବା ଅପସ୍ମାର ବାତ ଅଛି ସେମାନଙ୍କର ମଧ୍ୟ ସ୍ମରଣ ଶକ୍ତି କମିଯାଏ । ଆଗ କାଳରେ ଏହି ବାତକୁ କାଳସୀ ଲାଗିଲା ବୋଲି କହୁଥିଲେ । ଏହି ବାତ ହେଲେ ରୋଗୀ ମୂର୍ଚ୍ଛା ଯାଏ, ହାତଗୋଡ଼ ବହୁ

ଜୋର୍‌ରେ ବାଡ଼ାଏ ଓ ବେଳେବେଳେ ଜଭ କାମୁଡ଼ ପକାଏ । ଆଜକାଲି ଏହି ରୋଗପାଇଁ ଭଲ ଡାକ୍ତରୀ ଔଷଧ ବାହାରିଲଣି । ଡାଲାଣ୍ଟିନ ସୋଡ଼ିଅମ ଓ ଫିନୋବାର୍ବିଟୋନ୍ ପ୍ରଭୃତି ଔଷଧ ତିନି ବର୍ଷ ଖାଇଲେ ଏହି ରୋଗ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଯାଇଥାଏ । ଏଭଳି ରୋଗୀମାନେ ଗଛ ଚଢ଼ିବା, ପାଣିରେ ପହଁରିବା, ଗାଡ଼ି ଚଳାଇବା ପ୍ରଭୃତି କାମ କରିବା ଉଚିତ ନୁହେଁ ।

ଆମ ଦେଶରେ କୃମିରୋଗ ବେଶୀ । ସାଧାରଣତଃ ପେଟରେ ଅଙ୍କୁଶ କୃମି ହେଲେ ରକ୍ତହୀନତା ରୋଗ ହୋଇଥାଏ । ରକ୍ତହୀନତା ରୋଗ ହେଲେ ମନେରଖିବାର ଶକ୍ତି ମଧ୍ୟ କମିଯାଏ । ଝାଡ଼ା ପରୀକ୍ଷା କରି ଅଙ୍କୁଶ କୃମି (Hook Worm) ଥିଲେ ମେବେଣ୍ଡାଜୋଲ୍ ନାମରେ ଛଅଟି ବଟିକା ସକାଳେ ଗୋଟିଏ ରାତିରେ ଗୋଟିଏ ଖାଇଲେ ଏହା ଆରୋଗ୍ୟ ହୋଇଥାଏ । ଏହା ବ୍ୟତୀତ ଏହି ରୋଗୀମାନେ ଆର୍ଥିକ ସୁବିଧା ଅନୁସାରେ ସୁଷମ ଖାଦ୍ୟ ଖାଇବା ଉଚିତ । ଗାଁ ଗହଳରେ ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନେ ଅଣ୍ଡା ପରିବର୍ତ୍ତେ ୨୫୦ ଗ୍ରାମ ଓଜନର ଗେଣ୍ଡାମାଂସ ତେଲରେ ଭାଜି ଖାଇଲେ ଉପକାର ମିଳିଥାଏ ।

ଏହା ବ୍ୟତୀତ କେତେକ ଅନ୍ତଃସ୍ରାବୀ ଗ୍ରନ୍ଥିର ରସ (Hormone) କମିଗଲେ ସ୍ମରଣଶକ୍ତି କମିଯାଏ । ଆମର ବେକ ପାଖରେ ଥାଇରଏଡ଼ ବୋଲି ଏକ ଅନ୍ତଃସ୍ରାବୀ ଗ୍ରନ୍ଥି ଅଛି ଏବଂ ପେଟରେ କିଡ଼ନି ଉପରେ ସୁପ୍ରାରିନାଲ ବୋଲି ଆଉ ଏକ ଗ୍ରନ୍ଥି ଅଛି । ଏହି ଗ୍ରନ୍ଥିମାନଙ୍କର ରସ କମିଗଲେ ଲୋକ ଦୁର୍ବଳ ହୋଇଯାଏ, ଅସୁନ୍ଦର ହୋଇଯାଏ, ସ୍ୱର ମୋଟା ହୋଇଯାଏ, ରକ୍ତଚାପ କମିଯାଏ, ଦେହରେ କଳା କଳା ଦାଗ ହୋଇଯାଏ, ଖରି ସୁନ୍ଦରୀ ସ୍ତ୍ରୀଲୋକ ଅତି ଅସୁନ୍ଦର ଦେଖାଯାଏ । ତେଣୁ ଏଭଳି ରୋଗ ଥିଲେ ତାହାର ହରମୋନ ଚିକିତ୍ସା କଲେ ରୋଗ ସମ୍ପୂର୍ଣ୍ଣ ଭଲ ହୋଇଯାଏ ଏବଂ ସ୍ମରଣଶକ୍ତି ବୃଦ୍ଧିପାଏ ।

ଉପରେ ଏସବୁ ଯେଉଁ ରୋଗର ନାମ ଦିଆଗଲା, ସେଭଳି ରୋଗ ଭୋଗ୍ କରୁଥିବା ଲୋକଙ୍କର ସଂଖ୍ୟା ଅପେକ୍ଷାକୃତ ବହୁତ କମ୍ । ତେଣୁ ସ୍ମରଣଶକ୍ତି କମେଇବା ପାଇଁ ରୋଗ ଅପେକ୍ଷା ଅଳସୁଆମି ବେଶୀ

ଦାୟୀ । ଏଥିଲାଗି କଠୋର ପରିଶ୍ରମ ଆବଶ୍ୟକ । କେବଳ କଠୋର ପରିଶ୍ରମ ଦ୍ୱାରା ହିଁ ସ୍ମରଣଶକ୍ତି ବୃଦ୍ଧି ପାଏ ।

ହସ୍ତମୈଥୁନର ଶରୀର ଉପରେ ବିଶେଷ କୌଣସି କୁପ୍ରଭାବ ନାହିଁ; ଏହା କେବଳ ମାନସିକ ଗ୍ଲାନି ବଢ଼ାଇଥାଏ । ଦୃଢ଼ ଆତ୍ମବିଶ୍ୱାସ ଏବଂ ମନୋବଳ ଏହି ଅଭ୍ୟାସରୁ ରକ୍ଷା ପାଇବାର ଉପାୟ । ଅଭ୍ୟାସ ପ୍ରଭାବରେ ଏଭଳି ଇଚ୍ଛାହେଲେ ସେହି ସମୟରେ ବାହାରକୁ ଚାଲି ଆସିବା କିମ୍ବା ଭଲ ବହି ପଢ଼ିବାଦ୍ୱାରା ବା ଯୌନାଙ୍ଗକୁ ଥଣ୍ଡା ପାଣିରେ ଧୋଇଦେଲେ ଉପକାର ମିଳିଥାଏ । ଏଭଳି ଅଭ୍ୟାସ ଯୋଗୁ ଲଜ୍ଜିତ ହେବାର କାରଣ ନାହିଁ । ମନସ୍ତାପ ନକରି ଭବିଷ୍ୟତ ପାଇଁ ଉନ୍ନତ ଚିନ୍ତାରେ ମଜ୍ଜି ରହିବା ଆବଶ୍ୟକ ।

ମାନସିକ ଅଶାନ୍ତି ରକ୍ତଚାପ ସାମାନ୍ୟ ବଢ଼ାଇ ଦେଇଥାଏ । ଜଣେ ବୟସ୍କ ସୁସ୍ଥ ଲୋକର ସାଧାରଣ ରକ୍ତଚାପ ୧୨୦—୧୪୦ / ୮୦—୯୦ ମଧ୍ୟରେ ଥାଏ । ଏହା ଅଙ୍କ ଭଳି ସ୍ଥିର ରହେ ନାହିଁ । ଦୌଡ଼ାଦୌଡ଼ି କଲେ ମାନସିକ ଉତ୍ତେଜନା ସମୟରେ ଏହା ବୃଦ୍ଧି ପାଏ । ଏସବୁ ସତ୍ତ୍ୱେ ତୁମର ରକ୍ତଚାପ ଠିକ୍ ରହିଥିବାରୁ ତୁମର ଉଚ୍ଚ ରକ୍ତଚାପ ରୋଗର ଭୟ ନାହିଁ ।

ବହୁତ ସମୟରେ ମାନସିକ ଅସ୍ଥିରତା ଓ ଉତ୍ତେଜନା ଥିଲେ ଡାକ୍ତରମାନେ ଭଲ ନିଦପାଇଁ ଏବଂ ଉତ୍ତେଜନା କମାଇବା ପାଇଁ ଔଷଧ ଦିଅନ୍ତି ଏବଂ ଏହାକୁ ମାନସିକ ରୋଗ ବୋଲି କହନ୍ତି । ଡାକ୍ତରମାନେ ରୋଗ ଚିକିତ୍ସାର କୌଣସି ନିର୍ଦ୍ଦିଷ୍ଟ ଉପାୟ ନ ପାଇଲେ ସେହି ରୋଗୀକୁ ମାନସିକ ରୋଗୀ ବୋଲି ବୁଝି ନ ବିଚାରି ବେଳେବେଳେ କହି ଦେଇଥାନ୍ତି । ଏଥିପାଇଁ ବିବ୍ରତ ହେବାର କୌଣସି କାରଣ ନାହିଁ । ସଭ୍ୟତା ବଢ଼ିଲେ ମାନସିକ ଅସ୍ଥିରତା ଓ ଉତ୍ତେଜନା ବୃଦ୍ଧି ପାଇଥାଏ । ତେଣୁ ପରିସ୍ଥିତି ସହିତ ଖାପ ଖୁଆଇ ଚାଲିଲେ ବହୁତ ଉତ୍ତେଜନା କମିଯାଏ । ଏହି ବୟସରେ ପିଲାମାନେ ସାଧାରଣତଃ ଅଧିକ ଅଶ୍ଳୀଳ ପୁସ୍ତକ ପଢ଼ିଥାନ୍ତି । ଅଭ୍ୟାସ କରି ସେଭଳି ବହିଠାରୁ ଦୂରରେ ରହିବା

ଆବଶ୍ୟକ । ଯୌନଶିକ୍ଷା ଖରାପ ନୁହେଁ, କିନ୍ତୁ ଆବଶ୍ୟକତାଠାରୁ ଅଧିକ ଜାଣିବା ଏବଂ ଅଭ୍ୟାସ କରିବା ମାନସିକ ସ୍ୱାସ୍ଥ୍ୟପାଇଁ ଭଲ ନୁହେଁ । ପାଠ୍ୟପୁସ୍ତକ ବ୍ୟତୀତ ଉନ୍ନତ ସାହିତ୍ୟ, ଧର୍ମ, ବିଜ୍ଞାନ, ଇତିହାସ, ଜୀବନୀ ପ୍ରଭୃତି ଉପାଦେୟ ପୁସ୍ତକ ମାନସିକ ଶାନ୍ତି ଆଣିବାରେ ବିଶେଷ ସାହାଯ୍ୟ କରିଥାଏ । ସ୍ଥୂଳତଃ ତୁମେ ମାନସିକ ରୋଗ ଭୋଗ କରୁନାହଁ, ମାନସିକ ଉତ୍ତେଜନା ଭୋଗ କରୁଅଛ ମାତ୍ର । ଏହା ଭଲ ଅଭ୍ୟାସ ଦ୍ୱାରା ଆୟତ୍ତ କରାଯାଇ ପାରିବ । ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟାତ୍ୟାଗ, ସ୍ନାନ, ସାଧାରଣ ଉପାସନା, ସାତ୍ତ୍ୱିକ ଆହାର, ନିଶା-ଦ୍ରବ୍ୟରୁ ବିରତି, ଉପଯୁକ୍ତ ଶାରୀରିକ ପରିଶ୍ରମ, କର୍ତ୍ତବ୍ୟବୋଧ, ସହାନୁଭୂତି, ଦୈନିକ ଡାଇରି ଲିଖନ ମାନସିକ ଶାନ୍ତି ଆଣିବାରେ ସାହାଯ୍ୟ କରିଥାଏ ।

ଉପନିଷଦ ଭାଷାରେ ଶିବୋଽହମ୍ ଅର୍ଥାତ୍ ମୁଁ ମଙ୍ଗଳମୟ ଅମୃତର ସନ୍ତାନ; ମୋର କୌଣସି ଭୟ, ଦୁଃଖ, କ୍ଲେଶ ନାହିଁ, ଏହା ଭାବି କାର୍ଯ୍ୟ କଲେ ଅଚିରେ ସବୁରୋଗ ଆରୋଗ୍ୟ ହୋଇଯିବ ।



ଯେଉଁମାନେ ସତ୍ୟର ଆରାଧନା କରନ୍ତି ଓ ସଦା ସନ୍ତୁଷ୍ଟ ଥାଆନ୍ତି, ସେମାନେ ହିଁ ଈଶ୍ୱରଙ୍କର ପ୍ରକୃତ ସେବା କରନ୍ତି । ସେମାନେ ଅନ୍ୟାୟର ପଥରେ ପଦାର୍ପଣ କରନ୍ତି ନାହିଁ । ଆଚରଣରେ ସେମାନେ ସାଧୁ ରହନ୍ତି ଓ ମହତ୍ କାର୍ଯ୍ୟମାନ ସାଧନ କରନ୍ତି । ସାଂସାରିକ ବନ୍ଧନ ସେମାନଙ୍କର ଛିନ୍ନ ହୋଇଯାଏ । ସେମାନେ ଚିରନ୍ତନ ପ୍ରେରଣା ଲାଭ କରନ୍ତି ।

—ଗୁରୁ ନାନକ

# କୁଷ୍ଠରୋଗ

**ପ୍ରଶ୍ନ**—ମୋର ବୟସ ୨୭ ବର୍ଷ । ପାଞ୍ଚବର୍ଷ ତଳେ ଆଇ. ଏ. ଏସ୍. ପରୀକ୍ଷା ଦେବାପାଇଁ ମୁଁ କଟକରେ ରହି ପଢ଼ାପଢ଼ି କରୁଥାଏ । ସୁନ୍ଦର ଚେହେରା ବୋଲି ମନରେ ମୋର ଭାରି ଗର୍ବ । ପାଞ୍ଚଫୁଟ ଦଶ ଇଞ୍ଚ ଉଚ୍ଚ । ସତଷଠି କେଜି ଓଜନ । ଧୀର୍ଘ ବଳିଷ୍ଠ ଚେହେରା । ସାଙ୍ଗସାଥୀଏ ମୋତେ 'ଜୀତେନ୍ଦ୍ର' ବୋଲି ଡାକନ୍ତି । ଦିନେ ସକାଳେ ହଠାତ୍ ଦାଢ଼ି କାଟୁକାଟୁ ମୋର ଗାଲ କଟିଗଲା । ମୁଁ ଗୋଟିଏ ଫିଲ୍ମ ଗୀତ ସୁଣୁରି ମାରି ବୋଲୁଥାଏ । ଗାଲ କଟିଗଲା ପରେ ମଧ୍ୟ ମୋତେ କିଛି ଜଣାଗଲା ନାହିଁ । ଦାଢ଼ି କାଟିସାରି ଡେଟଲ ଲଗାଇଲି ପରେ ମଧ୍ୟ ତାହା ପୋଡିଲା ନାହିଁ । ମୁହଁକୁ ଭଲଭାବରେ ପୋଛି ଆଇନାରେ ଦେଖିଲା ବେଳକୁ ସେ ଜାଗାରେ ଏକଇଞ୍ଚ ଗୋଲେଇର ଗୋଟିଏ ଛିଡ଼ । ଗୋରା ମୁହଁରେ ଏହା ଈଷତ୍ ନାଲି ଦିଶୁଥାଏ । ଚାପିଲାରୁ ଏହା ଟିକେ ଗୋଦଡ଼ା ଉଚ୍ଚା ଜଣାଗଲା । ଏହାର କଡଗୁଡ଼ାକ ଭଲ ଜଣାପଡ଼ୁ ନଥାଏ । ଚମ ସଙ୍ଗେ ମିଶିଯାଇଥାଏ । ଛୁଇଁଲେ ବେଶୀ କିଛି ବାଧେ ନଥାଏ । ଜଣେ ସାଙ୍ଗ ପିଲାକୁ ପଚାରିଲି, ସେ କହିଲା ବସ୍ତ୍ରପ ଛିଡ଼ । ତଥାପି ମନ ବୁ ଝି ଲା ନାହିଁ । ସଙ୍ଗେ ସଙ୍ଗେ ଡାକ୍ତରଖାନାକୁ ଦଉଡ଼ିଲି ।

ଡାକ୍ତରଖାନାରେ ପାଳି ପଡ଼ିବାକୁ ପ୍ରାୟ ଦେଢ଼ଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା । କିଛି ଖରାପ ରୋଗ ନ ବାହାରିବା ପାଇଁ ମା କାଳୀଙ୍କୁ ଗୁହାରି ଜଣାଉଥାଏ । ମୋର ପାଳି ପଡ଼ିବାରୁ ଡାକ୍ତରବାବୁ ଦେଖିଲେ । ସେ ସବୁ ପରୀକ୍ଷା କଲେ । ତୁଳାରେ ଏବଂ ପିନ ସାହାଯ୍ୟରେ ମୁହଁ ଛିଡ଼କୁ ପରୀକ୍ଷା କରି ଦେଖିଲେ । ମୁଁ ଅଳ୍ପ ଜାଣିପାରିଲି । ମୋର ଜାମାପଟା ଖୋଲି ଦେଇ ପିଠି, ଜଙ୍ଘ, ଗୋଡ଼ ପ୍ରଭୃତି ଦେଖିଲେ । ପିଠିରେ ଓ ଜଙ୍ଘରେ ଏହିଭଳି ଆଉ ତିନୋଟି ଛିଡ଼ ବାହାରିଲା । ଜଙ୍ଘ ଓ ପିଠି ଛିଡ଼ରେ ଆଦୌ ସ୍ପର୍ଶଶକ୍ତି ନଥିଲା । ଡାକ୍ତରବାବୁ ମୋତେ

କହିଲେ—ତୁମର ଏଇଟା କୁଷ୍ଠରୋଗ । ଶରୀରର ବିଭିନ୍ନ ସ୍ଥାନରେ ଏହା ଦେଖାଦେଲାଣି । ତୁମକୁ ନିହାତି କମ୍‌ରେ ପାଞ୍ଚବର୍ଷ ଔଷଧ ଖାଇବାକୁ ପଡ଼ିବ । ମୁଁ କେତୋଟି ପ୍ରଶ୍ନ ପଚାରିବାରୁ ସେ ବିରକ୍ତହୋଇ କହିଲେ—ଅବହେଳା କଲେ ତୁମର ଅବସ୍ଥା ରାସ୍ତାଘାଟରେ ବୁଲୁଥିବା କୁଷ୍ଠରୋଗୀଙ୍କ ଭଳି ବିକଳାଙ୍ଗ ହୋଇଯିବ ।

ଏଇ କଥା ଶୁଣିଲି ପରେ ମୋ ଆଖିରୁ ଜକୁଜକିଆ ପୋକ ବାହାରିଲି ଏବଂ ମୁଁ ସଙ୍ଗେ ସଙ୍ଗେ ତଳେ ମୂର୍ଚ୍ଛା ଗଲି । ମୂର୍ଚ୍ଛାରୁ ଉଠିଲି ବେଳକୁ ଟେବୁଲ ଗୋଡ଼ ଧାର ବାଜି ମୋର ମୁଣ୍ଡ ଖଣ୍ଡିଆ ହୋଇ ଯାଇଛି । ମୁଣ୍ଡରେ ୩ଟି ସିଲେଇ କରିବାକୁ ପଡ଼ିଲା । ଘରକୁ ଫେରି ଆଦୌ ନିଦ ହେଲି ନାହିଁ । ଅହରହ ଦୁଶ୍ଚିନ୍ତା, ଘୃଣା, କ୍ରୋଧ, ଅସୁନ୍ଦର ବିକଳାଙ୍ଗ ହେବାର ଭୟ ମୋତେ ସବୁବେଳେ ଘାରିଲା । ଦୁଇଦିନ ପରେ ବାପାଙ୍କ ପାଖକୁ, ମୋତେ ନ ଖେ ଜବାକୁ ଚିଠିଲେଖି ମୁଁ ବମ୍ବେ ପଳାଇଗଲି । ବମ୍ବେ ସିନା ପଳେଇଲି, ରହିବ କେଉଁଠି ? ନେଇଥିବା ଦୁଇଶହ ଟଙ୍କା ୧୫ ଦିନରେ ସରିଗଲା । ଷ୍ଟେସନରେ, ରାସ୍ତାକଡ଼ରେ, ସମୁଦ୍ର କୂଳରେ କୁଷ୍ଠରୋଗୀମାନଙ୍କୁ ଦେଖି ରୋଗର ଯନ୍ତ୍ରଣା ସହ୍ୟ କରି ନପାରି ଆତ୍ମହତ୍ୟା କରିବାକୁ ସ୍ଥିର କଲି । ଏଇଆ ଭାବି ଦ୍ରୁତଗତିରେ ରାସ୍ତା ପାରହେବାକୁ ଚେଷ୍ଟା କରୁଥିଲିବେଳେ ଏକ କାର୍ ଦୁର୍ଘଟଣାରେ ଗୋଡ଼ ଭାଙ୍ଗିଗଲା ଏବଂ ମୋତେ ଅଚେତ ଅବସ୍ଥାରେ ଏକ ମିସନାରୀ ଡାକ୍ତରଖାନାରେ ଭର୍ତ୍ତି କରାହେଲା । ତିନିମାସରେ ସେ ପ୍ଲାଷ୍ଟର ଫିଟିଲା । ମିସନାରୀ ନର୍ସମାନଙ୍କ ପ୍ରାଣପୂର୍ଣ୍ଣ ବ୍ୟବହାର, ଡାକ୍ତରମାନଙ୍କ ସହାନୁଭୂତି ଗରିବ ଭିକାରି, ଦୁଃସ୍ଥ ଦରିଦ୍ର ଲୋକଙ୍କ ପ୍ରତି ସମାନ ବ୍ୟବହାର ମୋତେ ପୁଣି ବଞ୍ଚିବାର ଆଶା ଦେଲା । ସାଧାରଣତଃ ଓ୍ୱାର୍ଡ଼ମାନଙ୍କରେ ମଧ୍ୟ କେତେ କୁଷ୍ଠରୋଗୀ ସେଠାରେ ଚିକିତ୍ସା ହେଉଥାନ୍ତି । ଡାକ୍ତରଙ୍କୁ ମୋର ଛଉକଥା କହିଲି । ସେ ସହାନୁଭୂତି ସହିତ ମୋର ସମସ୍ତ କଥାଶୁଣି କହିଲେ, 'ଯକ୍ଷ୍ମା, ଟାଇଫଏଡ଼୍ ପରି କୁଷ୍ଠରୋଗ ଆଉ ଏକ ଜୀବାଣୁଜନିତ ରୋଗ, ତୁମର ରୋଗ ଆରମ୍ଭ ହୋଇଛି ମାତ୍ର । ଏହା ବଂଶଗତ ନୁହେଁ ନା ଈଶ୍ୱରଙ୍କ ଅଭିଶାପ ନୁହେଁ । ଔଷଧ ଖାଇଲେ ନିଶ୍ଚୟ ଭଲ ହୋଇଯିବ ।' ପ୍ଲାଷ୍ଟର ଫିଟିଲା ପରେ ସେଠାରେ ଅଫିସ ଆସିଷ୍ଟାଣ୍ଟ କାମ କରି ୩ ବର୍ଷ

ରହିଲ । ଔଷଧ ଖାଇ ଆସ୍ତେ ଆସ୍ତେ ମୋର କ୍ଷତ ସବୁ ଭଲହୋଇଗଲା । ମୋଭଳି କୁଷ୍ଠରୋଗରୁ ଭଲ ହୋଇଥିବା ଗୋଟିଏ ଝିଅକୁ ସେଠାରେ ବିବାହ କଲି । ଆମର ଗୋଟିଏ ଝିଅ, ଏହାପରେ ସମସ୍ତଙ୍କ ଘରକୁ ଫେରି ଆସିଲି । ମୁଁ ଏଠାରେ ଏକ ଘରୋଇ ସ୍କୁଲର ଶିକ୍ଷକ; ମଝିରେ ମଝିରେ ମୋର ଗୋଡ଼ହାତ ଝିମିଝିମି ହେଉଛି । ଗୋଡ଼ ପାଦ ବଧିର ହେଲେ ଏହି ରୋଗ କ'ଣ ପୁଣି ଆରମ୍ଭ ହେବ ? ଔଷଧ ଖାଇ କମିଗଲା ପରେ ପୁଣି କଣ ରୋଗ ହୁଏ ? ମୋର ଏଇଟା ଶଆକସନ କି ?

**ଉତ୍ତର**—କୁଷ୍ଠରୋଗ ଏକ ପୁରାତନ ଜଟିଳ ସଂକ୍ରାମକ ରୋଗ । ଟାଇଫଏଡ଼, ଯକ୍ଷ୍ମା ପ୍ରଭୃତି ରୋଗ ଭଳି ଏହା ଏକ ଜୀବାଣୁ ଜନିତ ରୋଗ । ଏହି ଜୀବାଣୁ ରୁ ଡାକ୍ତରୀ ନାମ ମାଇକୋ ବ୍ୟାକ୍ଟେରିଅମ ଲେପ୍ରି (Mycobacterium leprae)। ଏହି ରୋଗ ଆସ୍ତେ ଆସ୍ତେ ସାଧାରଣତଃ ଚର୍ମରେ ଓ ସ୍ନାୟୁରେ ଆରମ୍ଭ ହୁଏ । ଆରମ୍ଭ ସମୟରେ କୌଣସି ଯନ୍ତ୍ରଣା ବା ଜ୍ୱର ଇତ୍ୟାଦି ହୁଏ ନାହିଁ । ଆସ୍ତେ ଆସ୍ତେ ରୋଗ ବଢ଼େ । ରୋଗ ବଢ଼ିଥିଲେ ମଧ୍ୟ ସହଜରେ ଜଣାପଡ଼େ ନାହିଁ । ରୋଗକୁ ଦେଖିଲା ମାତ୍ରେ ଡାକ୍ତରମାନେ ଜାଣିପାରନ୍ତି । ଚିହ୍ନିବା ପାଇଁ ବିଶେଷ କିଛି ପରୀକ୍ଷାପର ଦରକାର ନାହିଁ । ଚିକିତ୍ସା ମଧ୍ୟ ବ୍ୟୟବହୁଳ ନୁହେଁ । ଉପଯୁକ୍ତ ଚିକିତ୍ସା ହେଲେ ଲୋକ ବିକଳାଙ୍ଗ ହୁଏ ନାହିଁ ଏବଂ ଭଲ ହୋଇଯାଏ । ଏସବୁ ସତ୍ତ୍ୱେ, 'କୁଷ୍ଠ' ନାମର ଉଚ୍ଚାରଣରେ ରୋଗୀ ଭୟରେ ଶିହରି ଉଠେ ।

ଏହାର କାରଣ ଜାଣିବା କିଛି ବିଚିତ୍ର ନୁହେଁ । ପ୍ରତ୍ୟେକ ମଣିଷ ନିଜକୁ ଭଲପାଏ । ଯେତେବେଳେ ସେ ବିକଳାଙ୍ଗ ହୁଏ କିମ୍ବା ପୁରାତନ ଜଟିଳ ରୋଗଗ୍ରସ୍ତ ହୁଏ, ତା'ର ମନ ଆତ୍ମଗ୍ଳାନିରେ ଭରିଉଠେ । ସମୟ ଅନୁପାତରେ ନିଜର ସଚେତନ ମନଭିତରେ ବିକଳାଙ୍ଗ ଅବସ୍ଥାକୁ ସେ ସମ୍ଭାଳି ନିଏ ସିନା କିନ୍ତୁ ଅବଚେତନ ମନରେ ଏହି ଅବସ୍ଥାର ଦାରୁଣ ଆଘାତରେ ତା'ର ବ୍ୟକ୍ତିତ୍ୱ ଓ ପୌରୁଷ ବଦଳିଯାଏ । ସେ ବ୍ୟସ୍ତ ବିବ୍ରତ ହୋଇ ନିଜପ୍ରତି ଓ ସମାଜପ୍ରତି ସନ୍ଦେହୀ ହୋଇଉଠେ ଏବଂ ଆତ୍ମଗ୍ଳାନିରୁ ରକ୍ଷା ପାଇବା ପାଇଁ ଏହାକୁ 'ଈଶ୍ୱରଙ୍କ ଅଭିଶାପ'

ବୋଲି ଭାବେ । ଏଥିରେ ଇନ୍ଧନ ଯୋଗାଇ ଥାଏ ଅନ୍ଧବିଶ୍ୱାସ, କୁସଂସ୍କାର, ସମାଜର ଘୃଣା, ପରିବାର ଲୋକଙ୍କର ଅବହେଳା, କିନ୍ତୁ ମୂଳରୁ ମନକୁ ବୈଜ୍ଞାନିକ ଚିନ୍ତାଧାରାରେ ଉଦ୍‌ବୁଦ୍ଧ କଲେ ଏଭଳି ହୀନମନ୍ୟତା ଆପେ ଆପେ ଲୋପ ହୋଇଯିବ । କୁଷ୍ଠରୋଗକୁ ଥଣ୍ଡା, ସର୍ଦ୍ଦି, ଇନ୍‌ଫ୍ଲୁଏନ୍‌ଜା, ଟାଇଫଏଡ୍‌ ଓ ହୃଦରୋଗ ଭଳି ଅନ୍ୟ ଏକ ରୋଗ ରୂପେ ଭାବିବା ଉଚିତ ଏବଂ ଏହି ରୋଗ ହେଲେ ଲଜ୍ଜିତ ହେବାର କୌଣସି କାରଣ ନାହିଁ ।

ରୋଗ ଲୁଚାଇ ରଖିବାରୁ ଆମ ଦେଶରେ କେତେକ କୁଷ୍ଠରୋଗୀ ଅଛନ୍ତି, ତାହା ଠିକ୍ ଭାବରେ ଜଣା ନାହିଁ । ତେବେ ସର୍ବଶେଷ ଗଣନାରୁ ଜଣାଯାଏ, ସାରା ଭାରତରେ ପ୍ରାୟ ୪୦ ଲକ୍ଷ ଲୋକ ଏବଂ ଓଡ଼ିଶାରେ ୪ ଲକ୍ଷ ଲୋକ କୁଷ୍ଠରୋଗ ଭୋଗ କରୁଛନ୍ତି । ଭାରତରେ ଦୁଇ ହଜାର ଲୋକରେ ଜଣେ ଲୋକ କୁଷ୍ଠରୋଗ ଭୋଗ କରୁଥିବାବେଳେ ଓଡ଼ିଶାରେ ଦୁଇ ହଜାରରେ ପଚିଶଜଣ ଲୋକ କୁଷ୍ଠରୋଗ ଭୋଗ କରୁଛନ୍ତି । ଏହାର କାରଣ, ଓଡ଼ିଶା ଦେବଦେବୀଙ୍କ ପୀଠ ହୋଇଥିବାରୁ ହଜାର ହଜାର ବର୍ଷଧରି ବିଭିନ୍ନ ପ୍ରଦେଶରୁ କୁଷ୍ଠରୋଗରେ ଆକ୍ରାନ୍ତ ଲୋକମାନେ ଘରଦ୍ୱାର ଛାଡ଼ି ଓଡ଼ିଶା ପଳାଇ ଆସୁଛନ୍ତି ଏବଂ ରୋଗୀ ସଂଖ୍ୟା ବୃଦ୍ଧିରେ ସାହାଯ୍ୟ କରୁଛନ୍ତି । ଏହା ବ୍ୟତୀତ ମେଳା, ମଉଚ୍ଛବ, ପୂଜା ପାର୍ବଣରେ ଦେବ-ଦେବୀଙ୍କ ମନ୍ଦିର ଆଗରେ ଭିକ୍ଷାଦେବା ଏକ ସାଧାରଣ ଓଡ଼ିଆ ସଂସ୍କୃତି ହୋଇଥିବାରୁ ରୋଗୀ ସଂଖ୍ୟା ଓ ରୋଗ ସଂକ୍ରମଣ ବିଶେଷ ଭାବରେ ବୃଦ୍ଧି ପାଇଛି । ଏଭଳି ରୋଗୀମାନଙ୍କୁ ଯଦି ଏକତ୍ର କରି କୁଷ୍ଠାଶ୍ରମ ଜରିଆରେ ଔଷଧ ଓ ସାଧାରଣ ଖାଦ୍ୟ ଦିଆଯାଇ ପାରନ୍ତା ଏବଂ ଏଥିପାଇଁ ଯଦି ବ୍ୟକ୍ତିବିଶେଷ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ସେମାନଙ୍କର ବିବାହ ବ୍ରତ, ଶୁଦ୍ଧି କ୍ରିୟା ପ୍ରଭୃତି ସମୟରେ ପ୍ରସ୍ତାବିତ ଖର୍ଚ୍ଚରୁ କିଛି ଅଂଶ କାଟି ଦାନ କରନ୍ତେ, ତେବେ କୋଡ଼ିଏ ବର୍ଷରେ ଯେ କୁଷ୍ଠରୋଗ ଲୋପହୋଇ ଯାଆନ୍ତା, ଏହା ନିଃସନ୍ଦେହରେ କୁହାଯାଇପାରେ । ସରକାରୀ ନିୟମ ଦ୍ୱାରା ରୋଗୀମାନଙ୍କୁ ସାଧାରଣ ଲୋକଙ୍କଠାରୁ ଅଲଗା ରଖିବାରୁ କାନାଡ଼ା, ଯୁକ୍ତରାଷ୍ଟ୍ର ଆମେରିକା, ଜାପାନ, ରୁଷିଆ, ଇସ୍ରାଏଲ, ଗ୍ରୀସ

ସ୍ପେନ, ଇଂଲଣ୍ଡ, ଘାନାମା ପ୍ରଭୃତି ଦେଶରେ କୁଷ୍ଠରୋଗ ସମ୍ପୂର୍ଣ୍ଣ ଲୋପ ପାଇବାକୁ ବସିଲାଣି ।

କୁଷ୍ଠରୋଗ ହୋଇଛିବୋଲି ସନ୍ଦେହ କରିବ କେତେବେଳେ ? ସାଧାରଣତଃ ଲକ୍ଷଣଗୁଡ଼ିକ ଚର୍ମ, ନାକ ଓ ସ୍ନାୟୁରେ ଦେଖାଯାଏ । ଚର୍ମରେ ଈଷତ୍ ଧଳା ବା ଲାଲ ଛଉ ହୁଏ । ଏହି ଛଉ କୌଣସି ଯନ୍ତ୍ରଣାଦାୟକ ନୁହେଁ କିମ୍ବା ଆଦୌ କୁଣ୍ଡାଇ ହୁଏ ନାହିଁ । ଏହି ଛଉଗୁଡ଼ିକ ବଧିରା । ଏଥିରେ ଲୋମ ନଥାଏ ଏବଂ ଏଥିରୁ ଝାଳ ବୁହେ ନାହିଁ । ବେଳେବେଳେ ଛଉଗୁଡ଼ିକ ତେଲିଆ ହୋଇ ଚକ ଚକ ଦିଶେ ଏବଂ ତା' ସାଙ୍ଗକୁ କାନ, ମୁହଁ କିମ୍ବା ହାତ ଗୋଡ଼ରେ ଗୁଳ ଗୁଳ ହୋଇ ଫୁଲିଯାଏ । ଆଖିପତାରୁ ବାଳ ଉପୁଡ଼ିବା ଆରମ୍ଭ ହୁଏ ଏବଂ କାନର ଫାଳ ମୋଟା, ବୋଦକା ଲମ୍ବା ହୋଇଯାଏ । କେବେ ହଠାତ୍ ଜର ହୋଇ ମୁହଁ, ପିଠି, ହାତ, ଗୋଡ଼ରେ ଗୁଳଗୁଳ ଫୁଲିଯାଏ ଏବଂ ଗଣ୍ଠି ସବୁ ଦରଜ ହୋଇଯାଏ । ଚମସବୁ ଲାଲପଡ଼ି ଗୁପିଗୁପିକା ହୋଇଯାଏ ଏବଂ ଚକ୍‌ଚକ୍ ତେଲିଆ ଦିଶେ । ବେଳେବେଳେ ହାତର ଆଙ୍ଗୁଳି ତଳ ଏବଂ ପାପୁଲି ଗୋଦରଭଳି ଫୁଲିଯାଏ । କେତେକ ରୋଗୀ ନାକ ରୁନ୍ଧୁଛି କିମ୍ବା ନାକରୁ ରକ୍ତ ପଡ଼ୁଛି ବୋଲି କହୁଥାନ୍ତି । ସେମାନଙ୍କୁ ପରୀକ୍ଷା କଲେ ତାଙ୍କ ଚମର ଈଷତ୍ ଲାଲ ତେଲିଆ ଛଉ ଦେଖାଯାଏ । ଆଉ କେତେ ରୋଗୀ ସ୍ନାୟୁବିକ ଲକ୍ଷଣ ସବୁ ପ୍ରକାଶ କରିଥାନ୍ତି । ହାତଗୋଡ଼ ସବୁ ଝିମିଝିମି ହୁଏ । ଦେହରେ ପିମ୍ପୁଡ଼ି ଗୁଲିଲା ଭଳି ଲାଗେ । ହାତ ଗୋଡ଼ରେ ନିଆଁ ଲାଗି ଜଳିଲା ଭଳି ବୋଧହୁଏ । କାମ କରୁ କରୁ ହାତଗୋଡ଼ରେ ଖଣ୍ଡିଆ ହେଲେ, ଘା' ହେଲେ କିମ୍ବା ଫୋଟକା ହେଲେ, ଜଣାପଡ଼େ ନାହିଁ । ହାତ, ଗୋଡ଼, ଆଙ୍ଗୁଠି ସବୁ ସରୁ ହୋଇଯାଏ ଏବଂ ହାତ, ଗୋଡ଼, ଆଖିର ମାଂସପେଶୀମାନେ ପାରାଲିସିସ ରୋଗରେ ଆକ୍ରାନ୍ତ ହୁଅନ୍ତି । ଏହା ଫଳରେ ରୋଗୀର ଚଲାବୁଲା କରିବା ମଧ୍ୟ କଷ୍ଟସାଧ୍ୟ ହୋଇଯାଏ । ରୋଗୀ ଏଭଳି ବିକଳାଙ୍ଗ ଘା' ଘଉଡ଼ି ହୋଇ ଅନ୍ଧ, କେମ୍ପା ହୋଇଯିବାରୁ ଏବଂ ଅଙ୍ଗହାନି ହେତୁ ସାଧାରଣ ଲୋକ ନଜରରେ ଭବିଷ୍ୟତ ସବୁ ରୋଗୀ ଓ ରୋଗ ଉଭୟଙ୍କୁ ଘୃଣା ଓ ଭୟ କରନ୍ତି । କିନ୍ତୁ ଏଭଳି ଲକ୍ଷଣରୁ ଯେ କୌଣସି ଗୋଟିଏ ଦୁଇଟି ଦେଖା

ଦେଲେ ପାଖ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଡାକ୍ତର କମ୍ବା କୁଷ୍ଠରୋଗ ବିଶେଷଜ୍ଞ ଡାକ୍ତରଙ୍କୁ ଥରେ ଦେଖାଇ ଦେବା ଆବଶ୍ୟକ । ସବୁ କୁଷ୍ଠରୋଗୀଙ୍କ ଚମରେ କୁଷ୍ଠରୋଗର ଜୀବାଣୁ ନ ଥାନ୍ତି । କେବଳ ସାଙ୍ଘାତିକ ଧରଣର କୁଷ୍ଠରୋଗୀମାନଙ୍କର ଚର୍ମରେ ଜୀବାଣୁ ଥାଆନ୍ତି ।

ଔଷଧ ଖାଇ ଭଲ ହେଉଥିବାବେଳେ ଯଦି ହଠାତ୍ ଛଉଗୁଡ଼ିକର ସଂଖ୍ୟା ବଢ଼ିଯାଏ କମ୍ବା ଛଉଗୁଡ଼ିକ ଫୁଲି ଲାଲ ହୋଇଯାନ୍ତି କମ୍ବା ଚର୍ମ ପରୀକ୍ଷାରେ କୁଷ୍ଠରୋଗର ଜୀବାଣୁ ବାହାରନ୍ତି, ସେଭଳି ଅବସ୍ଥାକୁ ଡାକ୍ତରମାନେ 'ରିଆକ୍ସନ' ( Reactional state of leprosy ) ବୋଲି କହନ୍ତି । ଏହି ସମୟରେ ଜ୍ୱର ଓ ଗଣ୍ଠି ପୀଡ଼ା ମଧ୍ୟ ହୋଇଥାଏ । ଏହାର କାରଣ ଏ ପର୍ଯ୍ୟନ୍ତ ଭଲ ଭାବରେ ଜଣାଯାଇନାହିଁ । କିନ୍ତୁ ଆଧୁନିକ ଚିକିତ୍ସାରେ ଏହା ସମ୍ପୂର୍ଣ୍ଣରୂପେ ଆୟତ୍ତ କରାଯାଇ ପାରୁଛି । ଏଥିପାଇଁ ଭୟର ଅବକାଶ ନାହିଁ ।

କେତେଦିନ ଔଷଧ ଖାଇବ ? ସାଂଘାତିକ ଧରଣର କୁଷ୍ଠ (Lepromatous leprosy) ଭଲ ହେବାର ୩ ବର୍ଷ ପର ପର୍ଯ୍ୟନ୍ତ ଏବଂ ସାଧାରଣ କୁଷ୍ଠ (Non-lepromatous leprosy)ଭଲ ହେବାର ଦେଢ଼ ବର୍ଷ ପର ପର୍ଯ୍ୟନ୍ତ ଔଷଧ ଖାଇବା ଆବଶ୍ୟକ । କୁଷ୍ଠର ଔଷଧ ସବୁଠୁ ଶସ୍ତା ଏବଂ ମାସେ ଔଷଧ ଖାଇଲେ ପ୍ରାୟ ଦୁଇଟଙ୍କା ଖର୍ଚ୍ଚ ହୁଏ । ଏହି ବଟିକାଟିର ନାମ ଡାପସୋନ୍ (Dapsone) । ଜଣେ ବୟସ୍କ ଲୋକ ଦିନକୁ ୭୦ ମିଲିଗ୍ରାମ କମ୍ବା ·୦୦ ମିଲିଗ୍ରାମ ବଟିକା ଖାଇବା ଦରକାର । ପିଲମାନଙ୍କୁ ସେହି ଅନୁପାତରେ ଅଳ୍ପ ଦିଆଯିବା ଆବଶ୍ୟକ । ଏହି ଔଷଧ ଆରମ୍ଭ ହେଲେ ମଝିରେ ବନ୍ଦ କରିବା ଉଚିତ ନୁହେଁ । କେତେ ରୋଗୀଙ୍କ ଦେହରେ ଏହି ବଟିକା ଯାଏ ନାହିଁ କମ୍ବା 'ରିଆକ୍ସନ' ଭଳି ଅବସ୍ଥା ସୃଷ୍ଟି ହୁଏ । ସେ ସମୟରେ ଡାକ୍ତରଙ୍କ ପରାମର୍ଶ କରିବା ଦରକାର । ବର୍ତ୍ତମାନ ସାଂଘାତିକ କୁଷ୍ଠରୋଗକୁ ଆୟତ୍ତ କରିବା ପାଇଁ 'ରିଫାମ୍ପିସିନ୍' 'କ୍ଲୋଫାଜିମିନ' ଭଳି ମୂଲ୍ୟବାନ୍ ଔଷଧ ବାହାରିଲାଣି । ଏହାଦ୍ୱାରା ଅଳ୍ପଦିନ ମଧ୍ୟରେ କୁଷ୍ଠରୋଗ ଯେ ସମ୍ପୂର୍ଣ୍ଣ ଆୟତ୍ତ ହୋଇଯିବ, ଏହା ନିଃସନ୍ଦେହ । ବେଳେବେଳେ 'ଡାପ୍‌ସୋନ' ଖାଇଥିଲି ବେଳେ ରୋଗର

ଜୀବାଣୁମାନେ ଏହି ଔଷଧକୁ ଆଉ ମାନନ୍ତି ନାହିଁ । ସେଭଳି ରୋଗୀଙ୍କୁ ଉପରେ ଲେଖାଥିବା ଦାମୀ ଔଷଧରେ ଚିକିତ୍ସା କରାଯାଇଥାଏ ।

ଏ ରୋଗ ହେଲେ ବିକଳାଙ୍ଗ ନ ହେବାପାଇଁ ରୋଗୀ କ'ଣ କରିବା ଉଚିତ ? ଦୈନିକ ସକାଳେ ଭଲ ଆଲୁଅରେ ହାତ ଗୋଡ଼ ନିରୀକ୍ଷଣ କରିବା ଆବଶ୍ୟକ । ଘଣ୍ଡିଆ ହୋଇଥିଲେ ତାହା ଧୁଆଧୋଇ କରି ମଲମ ଲଗାଇ ଡ୍ରେସିଂ କରିବା ଦରକାର । ହାତ ଗୋଡ଼ ଦୈନିକ ଜଡ଼ାତେଲ କିମ୍ବା ଏଡ଼ ମାସେଜ୍ ଅଏଲ ଲଗାଇ ଆସ୍ତେ ଆସ୍ତେ ଘଷିବା ଉଚିତ । କୌଣସି ଗରମ ପଦାର୍ଥ କିମ୍ବା ଦାଢ଼ୁଆ ଜିନିଷରେ ହାତ ଲଗାଇବା ଭଲ ନୁହେଁ । ଆର୍ଥିକ ସ୍ୱଚ୍ଛଳ ଶ୍ରେଣୀର ଲୋକମାନେ ହାତରେ 'ଗ୍ଲୋଭ' ଏବଂ ଗୋଡ଼ରେ ମୋଜା ପିନ୍ଧିବା ଦରକାର । ଚାଲିଲାବେଳେ ବହୁତ ଦୂରବାଟ ଏକାବେଳେ ଚାଲିବା ଉଚିତ ନୁହେଁ । କୌଣସି ଜାଗାରେ ବହୁତ ସମୟ ଠିଆ ହେବା ଭଲ ନୁହେଁ । ଚାଲିଲା ବେଳେ ଷ୍ଟ୍ରେଟ ପାଦୁକା ପିନ୍ଧାଇ ଚାଲିବା ଦରକାର । ଗୋଡ଼ ଯଦି ଫାଟେ, ତେବେ ସକାଳେ ଅଧ ଘଣ୍ଟାଏ ସାଧାରଣ ଥଣ୍ଡା ପାଣିରେ ଗୋଡ଼ ବୁଡ଼େଇ ରଖିବା ଦରକାର ଏବଂ ଗୋଡ଼ ଶୁଖିଗଲେ ସେଥିରେ ନଡ଼ିଆ ତେଲ କିମ୍ବା ଜଡ଼ା ତେଲ ଲଗାଇବା ଦରକାର । ଆର୍ଥିକ ସ୍ୱଚ୍ଛଳ ଶ୍ରେଣୀର ଲୋକମାନେ ଏକ ପ୍ରକାର ସ୍ୱତନ୍ତ୍ର ମାଇକ୍ରୋ ସେଲୁଲାର ରବର ଜୋତା (MCR footwear) ପିନ୍ଧି ପାରନ୍ତି । ସେହିଭଳି ନାକର ମଧ୍ୟ ଯତ୍ନ ନେବା ଉଚିତ । ହାତରେ ଆଞ୍ଜୁଳାଏ ପାଣି ନେଇ ଦୈନିକ ୧୦।୧୫ ଥର ନାକବାଟେ ଶୋଷି ନେବା ଉଚିତ । ଦିନ ଭିତରେ ଏଭଳି ୪।୫ ଥର କରିବା ଦରକାର । ନାକରେ ଘା' ଥିଲେ ସେଥିରେ ନିଓସ୍ପୋରିନ ଅଏଣ୍ଟମେଣ୍ଟ ଲଗାଇବା ଉଚିତ । ଯଦି ନାକରେ ବକଳ ବେଶୀ ଥାଏ, ତାହା ଆସ୍ତେ ଆସ୍ତେ ଛଡ଼ାଇ ଅଳ୍ପ ଭେସେଲିନ୍ ଲଗାଇଲେ ଉପକାର ମିଳେ । ନାକ ପାଖକୁ ଯେପରି ମାଛିମାନେ ନ ଆସନ୍ତି, ନଚେତ୍ ସେମାନେ ନାକରେ ଆସି ଡିମ୍ବ ଦିଅନ୍ତି । ଏହାକୁ ଗାଁଗହଳରେ ସାଧାରଣ ଲୋକମାନେ ପୋକ ପଡ଼ିବା କହି ପଞ୍ଚଗବ୍ୟ କରିବାକୁ କହିଥାନ୍ତି ଏବଂ ଏହା ଏକ ପାପ ବୋଲି ଗଣ୍ୟ ହୁଏ ।

ଏହି କଥା ପଢ଼ିସାରିଲାପରେ ଆପଣଙ୍କର ଭ୍ରମଧାରଣା ଦୂର ହୋଇଯିବଣି । ଆପଣଙ୍କ ଜୀବନ ପ୍ରକୃତରେ ଜଗେନ୍ଦ୍ରଙ୍କ ଏକ ଚଳଚ୍ଚିତ୍ର ସହ ସମାନ । ମୋର ଧାରଣା, ଆପଣ ସମ୍ପୂର୍ଣ୍ଣ ଭଲ ହୋଇଯାଇଛନ୍ତି, କାରଣ ଖାଲି କହିବା ଅପେକ୍ଷା ଉଦାହରଣ ଭଲ । ଏ ରୋଗ ବଂଶଗତ ନୁହେଁ । ଈଶ୍ୱରଙ୍କ ଅଭିଶାପ ନୁହେଁ । ଔଷଧ ଖାଇ ଲକ୍ଷ ଲକ୍ଷ ଲୋକ ଭଲ ହୋଇଯାଉଛନ୍ତି । ଔଷଧ ଶସ୍ତା । ଲୁଚାଇଲେ ରୋଗ ବଢ଼ିବ । ଆପଣଙ୍କର କ୍ଷତି ଓ ସମାଜର କ୍ଷତି ।

ଜାତିର ପିତା ମହାତ୍ମା ଗାନ୍ଧୀ ସ୍ୱପ୍ନ ଦେଖିଥିଲେ—ସ୍ୱାଧୀନ ଭାରତରେ ଯେପରି ଜଣେ ଭିକ୍ଷୁକ କିମ୍ବା ଜଣେ କୁଷ୍ଠରୋଗୀ ନ ରହନ୍ତି । ଆସନ୍ତୁ, ଆମ୍ଭେମାନେ ମିଳିମିଶି ତାଙ୍କ ସ୍ୱପ୍ନକୁ ସାର୍ଥକ କରିବା ।



---

ଭାରତର କାର୍ଯ୍ୟ ହେଉଛି—ପୃଥିବୀକୁ ଆଲୋକର ଏକ ଚିରନ୍ତନ ଉତ୍ସ ଯୋଗାଇବା । ଯେତେବେଳେ ପୃଥିବୀ କ୍ଳାନ୍ତ, ଶ୍ରାନ୍ତ ଓ ଜୀର୍ଣ୍ଣ ହୋଇ ପଡ଼ୁଛି, ଚାରିଆଡ଼େ ଭୌତିକତାର ବାତାବରଣ ଦେଖାଯିବା ସହିତ ଏପରି ସମସ୍ୟା ଦେଖାଦେଉଛି, ଯାହାର ସମାଧାନ ହୋଇପାରୁ ନାହିଁ, ସେତେବେଳେ ଭାରତର କର୍ତ୍ତବ୍ୟ ହେଉଛି ପୃଥିବୀକୁ ଯୌବନଶ୍ରୀରେ ମଣ୍ଡିତ କରିବା ଓ ମାନବ ସମାଜକୁ ଅମୃତତ୍ୱର ସନ୍ଧାନ ଦେବା । ଏବେ ଏପରି ସମୟ ଆସିଗଲାଣି ।

—ଶ୍ରୀ ଅରବିନ୍ଦ

# ଯକ୍ଷ୍ମା

**ପ୍ରଶ୍ନ**—ମୋର ବର୍ତ୍ତମାନ ବୟସ ୨୩ ବର୍ଷ । ତିନି ବର୍ଷ ତଳେ ମୋର ଗୋଟିଏ ଝିଅ ହେଲା । ଏ ଝିଅ ଜନ୍ମ ହେଲାପରେ ମୋତେ ବହୁତ ଝାଡ଼ା ହେଲା—ଦିନକୁ ଦଶ ବାର ଥର । ଝାଡ଼ା ସେତେ ପତଳା ନୁହେଁ, ଫଳଫଳିଆ, ବେଳେବେଳେ ନାଳ ମଧ୍ୟ ପଡ଼େ । ଏହା ୪ ମାସ ଲାଗି ରହିଲା । ଭୁଟ୍ଟୁକା ଭୁଟ୍ଟିକ ଔଷଧ, ଇସଫ୍‌ଗୁଲ ଭୁଷି ଓ ହୋମିଓପାଥି ଖାଇବାରେ ଏହା କମିଗଲା । ଏହାପରେ ମୋତେ ସର୍ଦ୍ଦିରେ ଜ୍ୱର ହେଲା, ପାହାନ୍ତାକୁ ଝାଳ ବୋହିଲା । ଖୁଁ ଖୁଁ କାଶ ଲାଗି ରହିଲା । ମୋର ସ୍ୱାସ୍ଥ୍ୟ ବହୁତ ଖରାପ ହୋଇଗଲା । କାଶ ଜ୍ୱର ପାଇଁ ସାଧାରଣ ଏଲୋପାଥି ଔଷଧରେ କିଛି କମିଲା ନାହିଁ । ପୁଣି ମଧ୍ୟ ଝାଡ଼ା ଆରମ୍ଭ ହେଲା । ଏଭଳି ଦୁଇ ମାସ ପରେ ହଠାତ୍ ଦିନେ ସକାଳେ ଝଲକାଏ ରକ୍ତ କାଶରେ ପଡ଼ିଲା । ସେ ଦିନଯାକ ତିନିଥର ରକ୍ତ ପଡ଼ିଲା । ମୋତେ ଅଧୁରେ କଟକ ନେଇ ଆସିଲେ । ସେଠାରେ ଛାତିର ଏକ୍‌ସ-ରେ କରି ରକ୍ତ, କଫ ପରୀକ୍ଷା କରି ଡାକ୍ତର କହିଲେ ମୋର ଛାତିରେ ଯକ୍ଷ୍ମା ହୋଇଛି । ମୋ ଛାତିର ଡାହାଣ ପାଖ ଫୁସଫୁସରେ ପାଣି ଜମିଯାଇଥିଲା । ଡାକ୍ତର ଚର୍ମ ବିଦ୍ଧକରି ଇଞ୍ଜେକସନ ସାହାଯ୍ୟରେ ସେ ପାଣି ବାହାର କଲେ । ମୋର ଖଙ୍କାରରେ ଯକ୍ଷ୍ମାରୋଗର ଜୀବାଣୁ ଥିବାରୁ ମୋ ପିଲାକୁ ମୋ' ଠାରୁ ଅଲଗା ରଖିବାକୁ ଉପଦେଶ ଦେଲେ ଏବଂ ମୋତେ ତିନି ମାସ ଅଲଗା ରହି ଚଳିବାକୁ ନିର୍ଦ୍ଦେଶ ଦେଲେ । ମୋତେ ଔଷଧ, ଇଞ୍ଜେକସନ ଲେଖିଦେଲେ ଏବଂ ଦେଡ଼ବର୍ଷ ବ୍ୟବହାର କରିବାକୁ କହିଲେ । ଶାଶୁ-ଘରେ ଚଳିବାର ଅସୁବିଧା ହେବ ବୋଲି ବାପଘରକୁ ଆସିଲି । ଏଇଠି ହେଲା ମୋର ଦୁଃଖର ଆରମ୍ଭ । ଦେଡ଼ବର୍ଷ ଔଷଧ ଖାଇ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲି । ପୂର୍ବର ସ୍ୱାସ୍ଥ୍ୟ ଫେରି ପାଇଲି । ଏହି ସମୟରେ ହଠାତ୍ ଦିନେ ଝାଡ଼ାରେ ମୋର ଝିଅଟି ମରିଗଲା । ଶାଶୁଘରୁ କେହି ଆସିଲେନି । ମୋର ସ୍ୱାମୀ ଜଣେ କଣ୍ଟ୍ରାକ୍ଟର । ସେ ମଧ୍ୟ ଆସିଲେନି । ମୁଁ ବହୁତ କନ୍ଦାକଟା କଲାରୁ ଭାଇ ମୋତେ କଲିକତା ନେଇ ଆସିଛନ୍ତି । ଏହା

ଭିତରେ ମୋର ସ୍ୱାମୀ ମୋତେ ନ ରଖି ମୋର ସାନଭଉଣୀକୁ ବାହା-ହେବା ପାଇଁ ଜିଦ ଧରିଛନ୍ତି । ସେ ଏବେ କଲିକତା ଆସି ମୋତେ ଛାଡ଼ପତ୍ର ଦେବାକୁ ଧମକାଉଛନ୍ତି । ତାଙ୍କ ମତରେ, ଯକ୍ଷ୍ମାରୋଗ ଔଷଧ ଖାଇ ଚପିଗଲେ ମଧ୍ୟ ପୁଣି ବାହାରିବ, ତେଣୁ ସେ ମୋ ସଙ୍ଗରେ ଚଳି ପାରିବେ ନାହିଁ । ମୋର ଛାତିର ପୁନର୍ବାର ଏକ୍ସ-ରେ କରି ଛାଇ ତାଙ୍କୁ ଓ ମୋତେ ନେଇ ବଡ଼ ଯକ୍ଷ୍ମା ବିଶେଷଜ୍ଞଙ୍କୁ କଲିକତାରେ ଦେଖାଇଲେ ମଧ୍ୟ ସେ ଡାକ୍ତରଙ୍କ କଥା ମାନିବାକୁ ରାଜି ନୁହନ୍ତି । ଦୟାକରି ଯକ୍ଷ୍ମାରୋଗ ସମ୍ବନ୍ଧରେ ଆଲୋଚନା କରିବେ ।

•

**ଉତ୍ତର**—ଆମ ଦେଶରେ ଯକ୍ଷ୍ମାରୋଗ ଏକ ସାଧାରଣ ରୋଗ । ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, ଫ୍ରାନ୍ସ ପ୍ରଭୃତି ଉନ୍ନତ ବିତ୍ତଶାଳୀ ଦେଶରେ ଏହା ସମ୍ପୂର୍ଣ୍ଣ ଆୟତ୍ତ ହୋଇଗଲାଣି । ଆମ ଦେଶରେ ଏବେବି ବର୍ଷକୁ ପ୍ରାୟ ଅଶୀଲକ୍ଷ ଲୋକ ଏ ରୋଗରେ ଆକ୍ରାନ୍ତ ହୁଅନ୍ତି । ଏଥିରୁ ପ୍ରାୟ ପାଞ୍ଚ ଲକ୍ଷ ଚିକିତ୍ସା ଅଭାବ, ଅନ୍ଧବିଶ୍ୱାସ, କୁସଂସ୍କାର ହେତୁ ମୃତ୍ୟୁମୁଖରେ ପଡ଼ନ୍ତି । ଏହା ଏଭଳି ବ୍ୟାପକ ଯେ ୧୫ ଦିନରୁ ଅଧିକ ଜର କିମ୍ବା ମାସକରୁ ଅଧିକ କାଶ ଲାଗି ରହିଲେ ଡାକ୍ତରମାନେ ଯକ୍ଷ୍ମାରୋଗ ସନ୍ଦେହକରି ଛାତିର ଏକ୍ସ-ରେ କରିବାକୁ ଉପଦେଶ ଦେଇ-ଥାନ୍ତି । ଯକ୍ଷ୍ମାରୋଗ ଏକ ସଂକ୍ରାମକ ରୋଗ । ହଇଜା, ନାଳଶୂଳା ଝାଡ଼ା, ଟାଇଫଏଡ୍ ଯେପରି ଜୀବାଣୁ ଦ୍ୱାରା ହୁଏ, ଏହା ମଧ୍ୟ ସେହିପରି ଜୀବାଣୁ ଦ୍ୱାରା ହୁଏ । ଡାକ୍ତରୀଭାଷାରେ ଏହି ଜୀବାଣୁର ନାମ ମାଇକୋ ବାକ୍ଟେରିଅମ୍ ଟ୍ୟୁବରକ୍ୟୁଲୋସିସ୍ । ଅଣୁବୀକ୍ଷଣ ଯନ୍ତ୍ର ତଳେ ଖଙ୍କାରରେ ରଙ୍ଗ ଦେଇ ଦେଖିଲେ ଏହା ଲାଲ ଲାଲ ଷ୍ଟ୍ରେଟ ଷ୍ଟ୍ରେଟ ବାଡ଼ ଭଳି ଦେଖାଯାଏ, ଠିକ୍ ଦୁଇଟି ବାଉଁଶ ଗଣ୍ଠି ମଧ୍ୟରେ ଥିବା ପବ ଭଳି । ଏହି ଜୀବାଣୁମାନେ ତିନପ୍ରକାର—ମଣିଷପାଇଁ, ଗୋରୁପାଇଁ, ଚଢ଼େଇପାଇଁ । ଗୋରୁଙ୍କ ଜୀବାଣୁ ମଧ୍ୟ ମଣିଷଠାରେ ଯକ୍ଷ୍ମା କରିପାରନ୍ତି । ଯକ୍ଷ୍ମା ଏଭଳି ରୋଗ ଯେ ଏହା ଶରୀରର ବିଭିନ୍ନ ଅଂଶକୁ ଆକ୍ରମଣ କରିଥାଏ । ମୁଖ୍ୟତଃ ଏହା ଫୁସ୍‌ଫୁସ, ଗ୍ରନ୍ଥି, ମସ୍ତିଷ୍କ, ହାଡ଼ ଗଣ୍ଠି ପ୍ରଭୃତି ଆକ୍ରମଣ କରେ । କିନ୍ତୁ ଏହା ମଧ୍ୟ ଅନେକ ସମୟରେ ଅନ୍ତନଳୀ, ଯକୃତ, ବୃକ୍କ (kidney),

ଆଖି ଓ ଚର୍ମରେ ରୋଗ ସୃଷ୍ଟି କରିଥାଏ । ଆମ୍ଭେମାନେ ଯାହାକୁ ଯକ୍ଷ୍ମା ବା ଟି.ବି. କହି ଉପ୍ଲ କରୁ, ତାହା ପ୍ରକୃତରେ ଫୁସଫୁସରେ ଯକ୍ଷ୍ମା (Pulmonary tuberculosis) । ଖଙ୍କାରରେ ଜୀବାଣୁ ଥିବା ରୋଗୀ ସଙ୍ଗେ ମିଳାମିଶା କଲେ ଏହି ରୋଗ ସଂକ୍ରମଣ କରିଥାଏ । କିନ୍ତୁ ସବୁ ଯକ୍ଷ୍ମାରୋଗୀଙ୍କର ଖଙ୍କାରରେ ଜୀବାଣୁ ନଥାନ୍ତି, ତେଣୁ ସେମାନେ ବିପଦ ସୃଷ୍ଟି କରନ୍ତି ନାହିଁ ।

ଏ ରୋଗ କିଛି ନୂଆ ନୁହେଁ । ଖ୍ରୀଷ୍ଟପୂର୍ବ ପାଞ୍ଚହଜାର ବର୍ଷର ମିଶର ଦେଶର ମମିର ମସ୍ତକ ହାଡ଼ରେ ଯକ୍ଷ୍ମାରୋଗର ଲକ୍ଷଣ ରହିଛି । ଖ୍ରୀଷ୍ଟପୂର୍ବ ଦୁଇ ହଜାର ବର୍ଷ ପୁରାତନ ଋଗ୍‌ବେଦର ସୂକ୍ତମାନଙ୍କରେ ଯକ୍ଷ୍ମାରୋଗର ବର୍ଣ୍ଣନା କରାଯାଇଛି । ଖ୍ରୀଷ୍ଟପୂର୍ବ ଛଅଶ ମସିହାରେ ସୁଶ୍ରୁତ ଏହାର ଚିକିତ୍ସା ପ୍ରଣାଳୀ ବର୍ଣ୍ଣନାକରି ଏହା ଦୁଃସାଧ୍ୟ ବୋଲି ଲେଖିଛନ୍ତି । ବର୍ଷବର୍ଷ ଧରି ଅନେକ ବୈଜ୍ଞାନିକ ଓ ଡାକ୍ତର ଚେଷ୍ଟାକରି ଏହି ରୋଗକୁ ଆୟତ୍ତ କରିପାରି ନଥିଲେ । ଏପରିକି ପଣ୍ଡିତ ଜବାହରଲାଲ ନେହେରୁଙ୍କ ପତ୍ନୀ ଶ୍ରୀମତୀ କମଳା ନେହେରୁ ଏହି ରୋଗରେ ମୃତ୍ୟୁବରଣ କରିଥିଲେ ।

ହଜାର ହଜାର ବର୍ଷ ଧରି ବହୁ ଗୁଣୀ, ଜ୍ଞାନୀ, ମାନୀ ଲୋକମାନଙ୍କୁ ଶିକାର କରିସାରିବା ପରେ ଔଷଧ ବିଜ୍ଞାନ ଆକାଶରେ ଏକ ନୂତନ ତାରକାର ଆବିର୍ଭାବ ହେଲା ୧୯୪୪ ମସିହାରେ—ଔଷଧଟିର ନାମ ଷ୍ଟ୍ରେପଟୋମାଇସିନ (Streptomycin) । ଏହି ଔଷଧର ଉଦ୍ଭାବକ ସେଲମ୍ୟାନ ଏ ୱାକ୍‌ସମାନ । ଏହି ଇଞ୍ଜେକସନ ନେଇ ଲକ୍ଷଲକ୍ଷ ରୋଗୀ ଭଲ ହେବାରୁ ତାଙ୍କୁ ୧୯୫୨ ମସିହାରେ ଚିକିତ୍ସା ବିଜ୍ଞାନରେ ନୋବେଲ ପୁରସ୍କାର ପ୍ରଦାନ କରାଯାଇଥିଲା । କିନ୍ତୁ ଗୋଟିଏ ଔଷଧ ବ୍ୟବହାର କଲାପରେ ଅନ୍ୟ ଔଷଧ ପାସ୍ (P.A.S.) ବାହାରିଲା ୧୯୪୬ରେ । ଆଇ. ଏନ. ଏଚ. (I.N.H.) ବାହାରିଲା ୧୯୫୩ରେ । ଏବେ ଆହୁରି ୧୦ ପ୍ରକାର ଔଷଧ ବାହାରିଲାଣି । ବର୍ତ୍ତମାନ ତିନି ଚାରି ପ୍ରକାର ଔଷଧ ମିଶାଇ ଖାଇଲେ ଯକ୍ଷ୍ମାପାଇଁ ଆଉ ଦେଢ଼ବର୍ଷ ଚିକିତ୍ସା କରିବା ଦରକାର ପଡ଼ୁନାହିଁ । ଏହା ଛଅମାସକୁ ଖସି ଆସିଲାଣି । କିନ୍ତୁ

ଯେଉଁ ଔଷଧ ମିଶାଇ ଖାଇବା କଥା, ତାହା ନିଜ ଚିକିତ୍ସକଙ୍କଠାରୁ ବୁଝିବା ଦରକାର । ଯକ୍ଷ୍ମା କଭଳି ନହେବ, ସେଥିପାଇଁ ପିଲାଦିନରୁ ବି.ସି.ଜି. ଟିକା ଦିଆଯାଉଛି । ଏହି ଟିକାର ବ୍ୟବସ୍ଥା ପ୍ରତ୍ୟେକ ସଦର ମହକୁମା ଡାକ୍ତରଖାନାରେ ଅଛି । ସେଠି ଯେଉଁମାନେ ଯକ୍ଷ୍ମାରୋଗ ବିଶେଷଜ୍ଞ ଅଛନ୍ତି, ତାଙ୍କୁ ଦେଖାକରି ପିଲାଙ୍କୁ ବି.ସି.ଜି. ଟିକା ଦେଇଦେବା ଉଚିତ । ପିଲା ଜନ୍ମ ପରେ ପରେ ମଧ୍ୟ ଏହି ଟିକା ଦିଆଯାଏ ।

ଆମ ଓଡ଼ିଶାରେ କେତେ ଯକ୍ଷ୍ମା ରୋଗୀ ଅଛନ୍ତି ତା'ର ଗଣନା ହୋଇନାହିଁ । ଅଳ୍ପ କେତେକ ଅଞ୍ଚଳ ଗଣନା କରାଯାଇ ସେମାନଙ୍କର ସଂଖ୍ୟା ହଜାରରେ ୧୩ରୁ ୧୫ ମଧ୍ୟରେ ବୋଲି ଜଣାଯାଇଛି । ଏହି ରୋଗୀମାନଙ୍କ ମଧ୍ୟରେ ୩ ଭାଗରୁ ଭାଗେ ଲୋକଙ୍କର ଖଙ୍କାରରେ ଜୀବାଣୁ ଅଛନ୍ତି । ଗରିବ ନିଶାଖିଆ ଲୋକଙ୍କର ରୋଗ ଅପେକ୍ଷାକୃତ ଅଧିକ । ତେଣୁ ଏତେ ଲୋକଙ୍କୁ ଡାକ୍ତରଖାନାରେ ରଖିବାକୁ ଜାଗା କାହିଁ ? ପୁଣି ଖଙ୍କାରରୁ ଜୀବାଣୁ ମାରିବାପାଇଁ ଛଅ ସପ୍ତାହରୁ ଛଅ ମାସ ପର୍ଯ୍ୟନ୍ତ ଲାଗିଥାଏ । ତେଣୁ ସବୁ ଯକ୍ଷ୍ମା ରୋଗୀଙ୍କୁ ଡାକ୍ତରଖାନାରେ ରଖିଲେ ବର୍ତ୍ତମାନ ସବୁ ସାଧାରଣ ଖଟିଆପରି ଆହୁରି ଅନେକ ଖଟିଆ ଲାଗିବ ଓ ସବୁ ଡାକ୍ତରଖାନା ଟି.ବି. ହସପିଟାଲ୍ ହୋଇଯିବ । ତେଣୁ ଯକ୍ଷ୍ମାରୋଗ ବିଶେଷଜ୍ଞମାନେ ଡାକ୍ତରଖାନା କିମ୍ବା ଟି.ବି. ସାନାଟୋରିଅମରେ କେବଳ ମୁମୂର୍ଷୁ ରୋଗୀଙ୍କୁ ରଖି ଚିକିତ୍ସା କରିବା ଉପରେ ଗୁରୁତ୍ୱ ଦେଉଛନ୍ତି । ଯେଉଁମାନଙ୍କୁ ରକ୍ତ ଦିଆଯିବ କିମ୍ବା ଅସ୍ତ୍ରୋପଚାର କରାଯିବ, ସେମାନେ ଡାକ୍ତରଖାନାରେ ରହିବା ଦରକାର । ଅନ୍ୟମାନେ ଘରେ ରହି ଔଷଧ ଖାଇବା ଆବଶ୍ୟକ । ଯକ୍ଷ୍ମାରୋଗ ପାଇଁ ପ୍ରାୟ ସବୁ ଔଷଧ ଓଡ଼ିଶାର ସବୁ ସରକାରୀ ଡାକ୍ତରଖାନାରେ ମାଗଣାରେ ମିଳୁଛି । ଏହା ବ୍ୟତୀତ ଭଲ ଖାଦ୍ୟ ପାଇଁ କିଛି ଟଙ୍କା ଓ ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧା ଅଛି । ସେଗୁଡ଼ିକର ସାହାଯ୍ୟ ନେବା ନିହାତି ଆବଶ୍ୟକ । ଜ୍ୱର, କାଶ ଲାଗି ରହିଲେ ଡାକ୍ତରଙ୍କ ପରାମର୍ଶ କରି ଥରେ ଛାତିରେ ଏକସ ରେ କରିବା ଦରକାର । ଏକ୍ସ-ରେ ସ୍ୱାସ୍ଥ୍ୟର କୌଣସି କ୍ଷତି କରେ ନାହିଁ ।

ଯକ୍ଷ୍ମା ନ ହେବା ପାଇଁ କେତେକ ପ୍ରାକୃତିକ ଚିକିତ୍ସା ଅଛି । ସେଥିପାଇଁ ଦୈନିକ ସକାଳ ସନ୍ଧ୍ୟାରେ ଖୋଲା ପବନରେ ଭ୍ରମଣ କରିବା

ଉଚିତ । ସକାଳର କଅଁଳିଆ ସୂର୍ଯ୍ୟକିରଣ ଶରୀର ପକ୍ଷରେ ବଡ଼ ହିତକର । ଦୈନିକ କଞ୍ଚା ଗଜାମୁଗ, ଗଜାବୁଟ ଖାଇବା ଦରକାର । ତୁଳସୀପତ୍ର ଏବଂ ମହୁ ଏକତ୍ରମିଶି ଖାଇଲେ କାଶରୋଗ ସାଧାରଣତଃ ହୁଏନାହିଁ । କିନ୍ତୁ ଥରେ ଯକ୍ଷ୍ମା ହେଲେ ଏହି ପ୍ରାକୃତିକ ଚିକିତ୍ସା ସହିତ ଡାକ୍ତରୀ ଔଷଧ ଖାଇବା ଉଚିତ । କାରଣ ଏହା ପରୀକ୍ଷିତ, ଶୀଘ୍ର ଫଳପ୍ରଦ । ଖଙ୍କାର ଇତ୍ୟାଦି ଗୋଟିଏ ଜାଗାରେ ରଖି ତାକୁ ପୋଡ଼ିଦେବା ଭଲ । କାଶିଲାବେଳେ ମୁହଁରେ ଲୁଗା ଦେଇ କାଶିବା ଦରକାର । ପ୍ରତି ତିନି ମାସରେ ଛାତିର ଗୋଟିଏ ଏକ୍ସ ରେ କରିବା ଆବଶ୍ୟକ । ଖାଦ୍ୟରେ କ୍ଷୀର, ଛେନା, ମାଛ, ମାଂସ ପ୍ରଭୃତି ପୁଷ୍ଟିସାର ରହିବା ଦରକାର । ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନେ ବେଙ୍ଗଗୋଡ଼ କିମ୍ବା ଗେଣ୍ଡା ମାଂସ ତେଲରେ ଭାଜି ଖାଇଲେ ଆବଶ୍ୟକୀୟ ପୁଷ୍ଟିସାର ଖାଦ୍ୟ ସଂଗ୍ରହ କରି ପାରିବେ ।

ଯକ୍ଷ୍ମାରୋଗ କେବେ ମହାମାରୀ ଥିଲା । ଏବେ ଉପଯୁକ୍ତ ଚିକିତ୍ସାରେ ଏହା ସମ୍ପୂର୍ଣ୍ଣ ସୁସ୍ଥ ହୋଇଯାଉଛି । ଏହା ସର୍ଦ୍ଦି, ଟାଇଫଏଡ଼, ନିମୋନିଆ ଭଳି ଆଉ ଏକ ରୋଗ । ଏହା ସମ୍ପୂର୍ଣ୍ଣ ଭଲ ହୋଇଗଲେ ପ୍ରାୟ ଲେଉଟେ ନାହିଁ । ଲକ୍ଷ ଲକ୍ଷ ଲୋକ ଭଲହୋଇ ସମ୍ପୂର୍ଣ୍ଣ ସୁସ୍ଥ ଜୀବନ ଯାପନ କରୁଛନ୍ତି । ଆପଣ ତା'ର ଉଦାହରଣ । ପୁରୁଣାକାଳିଆ ଲୋକମାନେ ଅନ୍ଧବିଶ୍ୱାସରେ ବୁଡ଼ିରହି ଏ ରୋଗ ବିଷୟରେ ନାନା ଗୁଜବ ପ୍ରଚାର କରୁଛନ୍ତି । ଆପଣଙ୍କ ସ୍ୱାମୀ ସେ ଗୁଜବ ଶୁଣି ବ୍ୟସ୍ତ ।

ଆପଣଙ୍କ ସମସ୍ୟା ସାମାଜିକ । ମୋର କେହି ଆତ୍ମୀୟ ଯଦି ଏଭଳି ବ୍ୟବହାର କରୁଥାନ୍ତେ, ମୁଁ ସଙ୍ଗେ ସଙ୍ଗେ ଏ ସମସ୍ୟା ସମାଧାନ କରାଇ ପାରନ୍ତି । ସମ୍ପୂର୍ଣ୍ଣ ଭଲ ହୋଇଗଲା ପରେ କାଳେ ଭବିଷ୍ୟତରେ ରୋଗ ହେବ, ଏ ଭୟ ତ ସବୁବେଳେ ରହିବ । ଆପଣଙ୍କ ସ୍ୱାମୀ ଯେ ଭବିଷ୍ୟତରେ କୌଣସି ଦୁର୍ଘଟଣାରେ ବିକଳାଙ୍ଗ ନ ହେବେ କିମ୍ବା କୌଣସି ଦୁରାରୋଗ୍ୟ ରୋଗ ଭୋଗ ନ କରିବେ, ଏ କଥାର ଆଜିଠୁ ଗ୍ୟାରେଣ୍ଟି ଦେବ କିଏ ? ମୋର ବିଶ୍ୱାସ ଭଦ୍ରଲୋକ ଅର୍ଥଲୋଭରେ ସାଧାରଣ ନୈତିକତା, ସମ୍ବେଦନଶୀଳତା, ସହାନୁଭୂତି ହରାଇଛନ୍ତି,

ନୋହିଲେ ଆପଣଙ୍କ ସାନ ଭଉଣୀକୁ ବାହା ହେବାର ପ୍ରସ୍ତାବ ସେ ଦେଇ ନଥାନ୍ତେ । ସ୍ତ୍ରୀ ଘୁଙ୍ଗୁଡ଼ି ମାରି ଶୋଇ ପଡ଼ିଥିବାରୁ ବିବାହ ବିଚ୍ଛେଦ ହେବା ଯାହା, କୌଣସି ରୋଗରୁ ଭଲ ହୋଇଗଲାପରେ ରୋଗ ନାଁ କହି ବିବାହ ବିଚ୍ଛେଦ ତାହା । ଏହା ଗଧିଆର ଛେଳିଛୁଆ ଖାଇବା ନ୍ୟାୟ । ମୋର ବିଶ୍ୱାସ, ଆପଣଙ୍କର ସ୍ୱାମୀ ଖୋଲା ମନରେ ସବୁ ବୁଝିପାରିବେ । ଆପଣ ମଧ୍ୟ ହତୋତ୍ସାହ ନହୋଇ ଦୃଢ଼ ରହନ୍ତୁ ।





---

## ଧର୍ମମୟ ଜୀବନ

ଧର୍ମମୟ ଜୀବନ ଅଧ୍ୟୟନଲବ୍ଧ ଅବ୍ୟକ୍ତ ତତ୍ତ୍ୱର ଗ୍ରହଣରେ କିମ୍ବା ଧର୍ମୋତ୍ସବର ପାଳନରେ ପର୍ଯ୍ୟବସିତ ନୁହେଁ । ଏହା ଭାବାବେଗ-ପୂର୍ଣ୍ଣ ଦେବାରାଧନା କିମ୍ବା ତୋଷାମଦପୂର୍ଣ୍ଣ ପ୍ରାର୍ଥନା ନୁହେଁ । ପୁନଶ୍ଚ ଏହା କେବଳ ଏକ ବିଶ୍ୱାସ କିମ୍ବା ଏକ ଅନିର୍ଦ୍ଦିଷ୍ଟ ସାମାଜିକ ଆଦର୍ଶବାଦ ନୁହେଁ । ଏହା ହେଉଛି ଏକ ଆଧ୍ୟାତ୍ମିକ ନିଶ୍ଚୟତା; ଯାହା ଦୁଃଖ ଓ ଗ୍ଲାନିର ମୁହୂର୍ତ୍ତରେ ଆଶା, ଆଶ୍ୱାସନା ଓ ସାହସ ପ୍ରଦାନ କରିଥାଏ । ଏହା ହେଉଛି ଏକ ହୃଦ୍‌ବୋଧ; ଯାହା ଚେତାଇଦିଏ ଯେ ପ୍ରେମ ଓ ନ୍ୟାୟ ହିଁ ବିଶ୍ୱର ଚରମ ବସ୍ତୁ । ଏହା ହେଉଛି ଏକ ବିଶ୍ୱାସ; ଯାହା ପରାଜୟର ଅସୀମ ଗ୍ଲାନି ମଧ୍ୟରେ ଆମକୁ ଦୃଢ଼କରି ରଖେ । ସମଗ୍ର ବିଶ୍ୱ ଏହାର ପ୍ରତିକୂଳ ହେଲେ ମଧ୍ୟ ଏହା ଭାଙ୍ଗିପଡ଼େ ନାହିଁ । ଏହା କ୍ଷୁଦ୍ର ଆତ୍ମ ସ୍ୱାର୍ଥ ପ୍ରତି ପୂର୍ଣ୍ଣ ଉଦାସୀନ ଏବଂ ବୃହତ୍ତର ବିଶ୍ୱ ଜୀବନରେ ନିମଜ୍ଜିତ । ଏହା କୌଣସି ସର୍ତ୍ତ ଉପରେ ନିର୍ଭର କରେ ନାହିଁ । ଏହା ହେଉଛି ଏକ ପୂର୍ଣ୍ଣ ଆତ୍ମସମର୍ପଣ, ପୂର୍ଣ୍ଣ ଆତ୍ମାହୁତି ।



—ଡକ୍‌ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍

---

# ସ୍ତନ ରୋଗ

**ପ୍ରଶ୍ନ**—ମୋର ବୟସ ୧୯ ବର୍ଷ, ସ୍ୱାସ୍ଥ୍ୟ ଦୁର୍ବଳ । ହାତ ଗୋଡ଼ଗୁଡ଼ିକ ଖୁବ୍ ସରୁସରୁ ଏବଂ ଦିନକୁ ଦିନ ଆହୁରି ପତଳା ହୋଇ-ଯାଉଛି । ଏ ପର୍ଯ୍ୟନ୍ତ ମୋର ସ୍ତନରେ କୌଣସି ଯୌବନ ସୁଲଭ ପରି-ବର୍ତ୍ତନ ହୋଇନାହିଁ । ଭାରି ଲାଜ ଲାଗୁଛି । ବାପା, ମାଆ ଓ ଅନ୍ୟାନ୍ୟ ଗୁରୁଜନମାନେ ଭାରି ବ୍ୟସ୍ତ । ପିଲାଦିନେ ମୋର ଭଲ ସ୍ୱାସ୍ଥ୍ୟ ଥିଲା । ବହୁବାର ଝାଡ଼ା, ମୂତ୍ର, ରକ୍ତ ପରୀକ୍ଷା କରିସାରିଲେଣି । କିଛି ଦୋଷ ବାହାରୁନାହିଁ । ଡାକ୍ତରମାନେ ଦୁର୍ବଳତା କହି ଟନିକ ଦେଉଛନ୍ତି, କିନ୍ତୁ କିଛି ଲାଭ ହେଉନାହିଁ । ମୋ ବାପା ଜଣେ ପ୍ରଥମ ଶ୍ରେଣୀ କଣ୍ଟ୍ରାକ୍ଟର । ସେ ମୋପାଇଁ ବହୁତ ପଇସା ଖର୍ଚ୍ଚ କଲେଣି । ମୋର ସ୍ତନର ଏଭଳି ଗଠନ ଯୋଗୁ ମୁଁ କଲେଜରେ ସାଙ୍ଗସାଥୀମାନଙ୍କ ନିକଟରେ ପରିହାସର ପାତ୍ରୀ । ଯଥାବିଧି ଆଲୋଚନା କରିବାକୁ ଅନୁରୋଧ । ମୋ' ଭଳି ଅନେକ ଭଉଣୀ ଅଛନ୍ତି । ସେମାନେ ଲାଜରେ କହିପାରୁ ନାହାନ୍ତି ।



ମୋର ବୟସ ୨୦ ବର୍ଷ । ସ୍ତନ ଦୁଇଟି ବଡ଼ ହୋଇ ଝୁଲି ପଡ଼ୁଛି । ଏହା ବେଶ୍ ଶିଥିଳ । ଏହା କୁମାରୀ ଜୀବନର ସୌନ୍ଦର୍ଯ୍ୟକୁ ନଷ୍ଟ କରିଦେଉଛି । ଅପରେସନ୍ ଦ୍ୱାରା ଏହା ଠିକ୍ କରାଯାଇ ପାରିବ କି ? କିମ୍ବା ଏହାର ଅନ୍ୟ କୌଣସି ଉପାୟ ଅଛି ?



ମୋର ବୟସ ୪୫ ବର୍ଷ, ୪ଟି ପିଲା । ସାନ ପିଲାର ବୟସ ୧୨ ବର୍ଷ । ଋତୁସ୍ରାବ ନିୟମିତ ହେଉଛି । ୬ ମାସ ତଳେ ବାମପଟ ସ୍ତନରେ ହାତ ମାରିଲାରୁ ଏହା ଭିତରେ ଗୋଟିଏ ବଡ଼ ଗୋଟାଳି ଭଳି ଟାଣୁଆ ମାଂସ ଲାଗିଲା । ସ୍ୱାମୀଙ୍କ ସଙ୍ଗରେ କଥା ହେଲା ପରେ ସେ ମୋତେ ହୋମିଓପାଥି ଖାଇବାକୁ ଦେଲେ । ସେଥିରେ ନ କମିବାରୁ

ପାଖ ଡାକ୍ତର ବାତଜ୍ୱର ବଟିକା ଖାଇବାକୁ ଦେଲେ । ସେଥିରେ ନ କମିବାରୁ ମୁଁ ବ୍ରହ୍ମପୁର ଡାକ୍ତରଖାନାକୁ ୨୫ ଦିନ ତଳେ ଗଲି । ଡାକ୍ତର ମାଂସ ପରୀକ୍ଷା କରି ଏହା କାନସର ରୋଗ ହୋଇଛି ବୋଲି କହୁଛନ୍ତି । ସେ ମୋର ସ୍ତନକୁ କାଟି ବାହାର କରିଦେବାକୁ ଚାହୁଁଛନ୍ତି । ମୁଁ ସେଥିରେ ରାଜି ନୁହେଁ । କ'ଣ କରିବାକୁ ହେବ, ଦୟାକରି ଉତ୍ତର ଦେବେ ।

**ଉତ୍ତର**—ସ୍ତନଯୁଗଳ ନାରୀତ୍ୱ ଓ ମାତୃତ୍ୱର ପ୍ରତୀକ । ନାରୀର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ସୁନ୍ଦର ସୁଗଠିତ ସ୍ତନର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସଭ୍ୟତାର ପ୍ରାକକାଳରୁ କବି, ଲେଖକ, କଳାକାର ଏହାର ବିସ୍ତୃତ ବର୍ଣ୍ଣନାରେ ଶତମୁଖ । ମହାକବି କାଳିଦାସ ତାଙ୍କର ପ୍ରଥମ ବାକ୍ସ୍ଫୁରଣ କାଳରେ ମା' ସରସ୍ୱତୀଙ୍କ ବନ୍ଦନା କଲାବେଳେ ମଧ୍ୟ ଏହାର ବର୍ଣ୍ଣନା କରିବାକୁ ଭୁଲିନାହାନ୍ତି କିନ୍ତୁ ନାରୀତ୍ୱ ଓ ସୌନ୍ଦର୍ଯ୍ୟର ଗର୍ବ ବ୍ୟତିରେକେ ସ୍ତନର ବହୁ ଉପାଦେୟ କାର୍ଯ୍ୟ ରହିଛି ।

ପୃଥିବୀରେ ଯେତେ ରସାୟନିକ କଳକାରଖାନା ଅଛି, ସେମାନେ ସ୍ତନର କାର୍ଯ୍ୟର କାଣିଚାଏ ମଧ୍ୟ କରିପାରିବେ ନାହିଁ । ରକ୍ତରୁ କ୍ଷୀର କରିବାର ସବୁଠାରୁ ଆଶ୍ଚର୍ଯ୍ୟଜନକ ଯନ୍ତ୍ରହିଁ କେବଳ ସ୍ତନ ।

ଜନ୍ମପରେ ମା କ୍ଷୀର ନହେଲେ ଆଜିକାଲି ପିଲାକୁ ଖାଇବାକୁ ଦେବାକୁ ଗାଈ କ୍ଷୀର, ଟିଣ କ୍ଷୀର ଓ ଅନ୍ୟାନ୍ୟ କ୍ଷୀର ମିଳୁଛି । କିନ୍ତୁ ସଭ୍ୟତାର ପ୍ରଥମକାଳରେ ମଣିଷ ଜାତିର ବଞ୍ଚିବା କେବଳ ସ୍ତନଉପରେ ନିର୍ଭର କରୁଥିଲା । ସେତେବେଳେ ତ ଏତେପ୍ରକାର ଖାଦ୍ୟ ମଣିଷ ଜାଣି ନଥିଲା । ସ୍ତ୍ରୀ ଲୋକମାନେ ପିଲା ପରେ ପିଲା ଜନ୍ମ କରୁଥିଲେ, ମାତୃସ୍ତନ କେତେବେଳେ ଶୁଖିଲା ନଥିଲା । ପିଲାପିଲି ହେବା ସମୟ ଏବଂ ତା'ପରେ ଏପରିକି ଆଈମା'ମାନେ ମଧ୍ୟ ନାତିଙ୍କୁ ନିଜ ସ୍ତନର କ୍ଷୀର ଖୁଆଇ ବଞ୍ଚାଉଥିଲେ । ସ୍ଥୂଳତଃ ୧୫ ବର୍ଷରୁ ୭୦ ବର୍ଷ ପର୍ଯ୍ୟନ୍ତ ଯେ କୌଣସି ସ୍ତ୍ରୀଲୋକ ଯେତେବେଳେ ପିଲାକୁ କୋଳରେ ଧରି କ୍ଷୀର ଧରାଉଥିଲେ, କ୍ଷୀର ବାହାରୁଥିଲା । ମଣିଷ ଜାତି ଯେ ଆଜି ବଞ୍ଚିଛି, ବିଜ୍ଞାନର କରାମତିରେ ଏତେ କଥା କରୁଛି, ଏହା କେବଳ ସେହି ପ୍ରାକ୍-କାଳରେ ମାତୃସ୍ତନର କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସୃଷ୍ଟି ପାଇଁ ଏ ଯେଉଁ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ରହିଛି, ତାହା ମାତ୍ର ଗୋଟିଏ ସ୍ୱେଦ ଗ୍ରନ୍ଥି । ଏହା ଡାକ୍ତରୀ ଭାଷାରେ ସେବାସିୟସ ଗ୍ଲାଣ୍ଡ । ପୁରୁଷ ଓ ସ୍ତ୍ରୀ ଲୋକଙ୍କର ଯେଉଁ ଝାଳବୁହା ଗ୍ରନ୍ଥି ଅଛି, ଏହା ତହିଁରୁ ଗୋଟିଏ । କେବଳ ହର୍ମୋନ୍‌ର ପ୍ରଭାବରେ ଏହା ନିର୍ଦ୍ଦିଷ୍ଟ ବୟସରେ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ତନ ରୂପେ ଶୋଭାପାଏ ।

ଆମେ ପଢ଼ିଛେ, ସଁବାଳୁଆରୁ ପ୍ରଜାପତି ସୃଷ୍ଟି ହୁଅନ୍ତି । କିନ୍ତୁ ସବୁ ସଁବାଳୁଆ ପ୍ରଜାପତି ହୁଅନ୍ତି ନାହିଁ । ସେହିଭଳି ସବୁ ଝାଳବୁହା ଗ୍ରନ୍ଥି ସ୍ତନ ହୋଇପାରନ୍ତି ନାହିଁ । ସବୁ ଝାଳବୁହା ଗ୍ରନ୍ଥି ଦୁର୍ଗନ୍ଧ ଝାଳ ବାହାର କରୁଥିବା ବେଳେ ସ୍ତନ କ୍ଷୀରରୂପକ ଅମୃତ ବାହାର କରି ଜୀବନ ରକ୍ଷାକରେ ।

ପିଲାଟିଏ ଜନ୍ମ ହେଲାବେଳେ ତା' ସ୍ତନକୁ ଚିପିଲେ ବେଳେ-ବେଳେ ପାଣିଚିଆ କ୍ଷୀର ବାହାରେ । ତାହାକୁ ଡହାଣିଆ କ୍ଷୀର କହନ୍ତି । ଗର୍ଭାବସ୍ଥାରେ ମା' ରକ୍ତରେ ଯେଉଁସବୁ ହରମୋନ୍ ଥାଆନ୍ତି, ତାର ପ୍ରଭାବରେ ପିଲା ସ୍ତନରୁ ଏପରି ବାହାରିଥାଏ, କିନ୍ତୁ ପିଲା ଜନ୍ମ ହେଲାପରେ ଏହି ହରମୋନର ପ୍ରଭାବ କମିଗଲେ ଏହା ତିନି ଚାରି ଦିନ ମଧ୍ୟରେ ଆପେ ଆପେ ଭଲ ହୋଇଯାଏ । ହର୍‌ମୋନ୍ ବୁଝିବା କଷ୍ଟକର ହୋଇପାରେ । ଏମାନେ ଭାରି ସୂକ୍ଷ୍ମ ପଦାର୍ଥ । ଶରୀରର ଅନ୍ତଃସ୍ରାବୀ ଗ୍ରନ୍ଥିମାନେ ଏହାକୁ ତିଆରି କରନ୍ତି । ମୁଖ୍ୟ ହର୍‌ମୋନଗୁଡ଼ିକର ଡାକ୍ତରୀ ଭାଷାରେ ନାମ ହେଲା— ଅଣ୍ଡ୍ରୋଜେନ୍, ଇଷ୍ଟ୍ରୋଜେନ୍, ଥାଇରଏଡ୍, ଷ୍ଟିରଏଡ୍ ଏବଂ ଇନ-ସୁଲିନ୍ । ଏହି ହର୍‌ମୋନଗୁଡ଼ିକର ପ୍ରଭାବ ଏଭଳି ଯେ' ଥାଇରଏଡ୍ ହରମୋନର ଅଭାବରେ ସବୁଠୁ ସୁନ୍ଦରୀ ସ୍ତ୍ରୀଲୋକ ସବୁଠୁ ଅସୁନ୍ଦରୀ ହୋଇଯିବ । ସେ ମୋଟା ହୋଇଯିବ, ଚମ ଫାଟି ବେଙ୍ଗ ଚମ ଭଳି ହୋଇଯିବ, ବାଳ ଉପୁଡ଼ିଯିବ, କଣ୍ଠ ପଡ଼ିଯିବ—ଏମିତି କେତେ କ'ଣ । ସେହିପରି ଇନ୍‌ସୁଲିନ ଅଭାବରେ ସବୁଠୁ ମୋଟା ଲୋକ କୁଟାପରି ସରୁ ହୋଇଯିବ, ତାକୁ ମଧୁମେହ ରୋଗ ହୋଇଯିବ । କୁମ୍ଭକର୍ଣ୍ଣ ଭଳି ଖାଇବ । ମାଠିଆ ମାଠିଆ ପରିସ୍ରା କରିବ । ଏହି ହର୍‌ମୋନଗୁଡ଼ିକରୁ

ଇଷ୍ଟ୍ରୋଜେନ ସ୍ତ୍ରୀ ଲୋକଙ୍କଠାରେ ବେଶୀ ଥାଏ ଏବଂ ଆଣ୍ଡ୍ରୋଜେନ୍ ପୁରୁଷ ଲୋକଙ୍କଠାରେ ବେଶୀ ଥାଏ । ଆଣ୍ଡ୍ରୋଜେନ ପ୍ରଭାବରେ ସାରା ଦେହରେ ବାଳ ଉଠେ କିନ୍ତୁ ମୁଣ୍ଡବାଳ ବଢ଼ିପାରେ ନାହିଁ । କିନ୍ତୁ ସ୍ତ୍ରୀ ଲୋକଙ୍କର ହର୍‌ମୋନ ଇଷ୍ଟ୍ରୋଜେନ ପ୍ରଭାବରେ ଦେହରେ ବାଳ ଉଠେ ନାହିଁ ଅଥଚ ମୁଣ୍ଡ ବାଳ ବଢ଼ିବାରେ ଲାଗିଥାଏ । ନାରୀର ନାରୀତ୍ୱ ମୁଖ୍ୟତଃ ଏହି ଇଷ୍ଟ୍ରୋଜେନ ଉପରେ ନିର୍ଭର କରେ । ଏହି ହର୍‌ମୋନ ଗର୍ଭାଶୟ ପାଖରେ ଥିବା ଡିମ୍ବକୋଷରେ ତିଆରି ହୁଅନ୍ତି । ସାଧାରଣତଃ ସ୍ତ୍ରୀ ଲୋକଙ୍କର ୧୨ ବର୍ଷରୁ ୪୫ ବର୍ଷ ମଧ୍ୟରେ ଏହା ଆବଶ୍ୟକୀୟ ପରିମାଣରେ ବାହାରେ । ୧୨ ବର୍ଷ ପୂର୍ବରୁ ଏହା ବହୁତ କମ୍ ପରିମାଣରେ ଥାଏ ଏବଂ ୫୦ ବର୍ଷ ବେଳକୁ ଏହା ଆସ୍ତେ ଆସ୍ତେ କମିଯିବାକୁ ଆରମ୍ଭ କରେ । ଏହି ହରମୋନ ପ୍ରଭାବରେ ସ୍ତନ ଉପରେ ଚର୍ବି ବୃଦ୍ଧି ହୁଏ ଏବଂ ସ୍ତନବୃନ୍ତର ରଙ୍ଗ ବଦଳେ । ନିତମ୍ବରେ ମାଂସ ବୃଦ୍ଧି ହୁଏ । ଏହି ହର୍‌ମୋନର ପରିମାଣ କମିଗଲେ ସ୍ତନ କିମ୍ବା ନିତମ୍ବର ବୃଦ୍ଧି ହୁଏନାହିଁ । ଅଧିକ ହର୍‌ମୋନ ବାହାରିଲେ ସ୍ତନ ପୃଥୁଳ ହୁଏ । ତେଣୁ ଉଭୟର ଚିକିତ୍ସା ଆବଶ୍ୟକ । ବେଳେବେଳେ ସ୍ତ୍ରୀ ଲୋକଙ୍କର ଶ୍ୱେତପ୍ରଦର ଏବଂ ପୁରୁଷ ଲୋକଙ୍କର ଧାତୁକ୍ଷୟକୁ ଲୋକମାନେ ହର୍‌ମୋନ କ୍ଷୟ ବୋଲି ଭାବି ବ୍ୟସ୍ତ ହୁଅନ୍ତି । ଏ କଥାଟା ସତ୍ୟ ନୁହେଁ । ସ୍ତନ ପୃଥୁଳ କିମ୍ବା କ୍ଷୁଦ୍ର ହେତୁ ସାଧାରଣତଃ ସ୍ତ୍ରୀ ଲୋକମାନେ ବ୍ୟସ୍ତ ହୁଅନ୍ତି । ଯେଉଁମାନଙ୍କର କ୍ଷୁଦ୍ର ସ୍ତନ ଆଜିକାଲି ତା ମଧ୍ୟରେ ସିଲିକନ ଇମ୍ପ୍ଲାଣ୍ଟ କରି ଆବଶ୍ୟକତା ଅନୁସାରେ ବଡ଼ କରାଯାଇ ପାରୁଛି । କିନ୍ତୁ ସାଧାରଣତଃ ପିଲାପିଲି ହେଲାପରେ ପୋଲାକ୍ଟିନ ନାମକ ହର୍‌ମୋନ ସାହାଯ୍ୟରେ ଏହାର ଆକାର ବୃଦ୍ଧି ପାଇଥାଏ ।

ଧନ୍ୱନ୍ତରୀଙ୍କ ମତରେ ଶତାବରୀକୁ ଗାଈ କ୍ଷୀରରେ ବାଟି କ୍ଷୀର ସହ ସେବନ କଲେ ସ୍ତନ ବୃଦ୍ଧି ହୁଏ ଏବଂ ଯେଉଁ ସ୍ତ୍ରୀଲୋକଙ୍କର କ୍ଷୀର ଭଲ ହେଉ ନଥାଏ, ସେମାନଙ୍କର ସ୍ତନରେ କ୍ଷୀର ବଢ଼େ ଓ ଦୁଧ ମଧୁର ତଥା ପୁଷ୍ଟିକର ହୋଇଥାଏ । ଯେଉଁମାନଙ୍କର ସ୍ତନ ପୃଥୁଳ ତଥା ଶିଥିଳ ହୋଇଥାଏ ତାହାପାଇଁ ସାଧାରଣତଃ ଅସ୍ତ୍ର ଚିକିତ୍ସା ଦରକାର ପଡ଼ିଥାଏ । ଏହି ଅସ୍ତ୍ରୋପଚାରର ସାହାଯ୍ୟରେ ଅଧିକ ଚର୍ବି ଓ ଚର୍ମକୁ ବାହାର

କର ନଥାଯାଏ । ୩।୪ କଲେଗ୍ରାମ ଚର୍ବି କଡ଼ାଯିବାର ମଧ୍ୟ ଦେଖାଯାଇଛି । ଭ୍ରୁଣ୍ଡିଟିକୁ ସାଧାରଣତଃ ଚତୁର୍ଥ ପିଞ୍ଜରା ଉପରେ ରଖିଦିଆଯାଏ । ଏହି ଅସ୍ତ୍ରୋପଚାରର ଏଭଳି ସୂକ୍ଷ୍ମ ଯେ ଏଥିରେ ଅସ୍ତ୍ରୋପଚାରର ଦାଗ ମଧ୍ୟ ସହଜରେ ଜଣାଯାଏ ନାହିଁ ।

ସାଧାରଣତଃ ଗର୍ଭସଞ୍ଚାର ଓ ସନ୍ତାନ ଲାଳନପାଳନ ବେଳେ ସ୍ତନର କାର୍ଯ୍ୟ ବୃଦ୍ଧି ପାଇଥାଏ । ଗର୍ଭାଧାନ ସମୟରେ କ୍ଷୀରବାହୀ ନାଳୀ ଏବଂ କ୍ଷୀରଗ୍ରନ୍ଥି ଗୁଡ଼ିକ ବୃଦ୍ଧି ପାଏ । ଧମନୀ ଓ ଶିରାର ପରିମାଣ ମଧ୍ୟ ଆନୁପାତିକ ଭାବରେ ବଢ଼େ । ସ୍ତନର ଆକାର ଦୁଇ ତିନ ଗୁଣ ବଢ଼ିଥାଏ । ପିଲାଜନ୍ମ ପୂର୍ବରୁ ଏହି କ୍ଷୀରଗ୍ରନ୍ଥି ଗୁଡ଼ିକରେ ସାଧାରଣତଃ କୋଷଗୁଡ଼ିଏ ଥାନ୍ତି; କିନ୍ତୁ ପିଲା ଜନ୍ମପରେ ଏହି କୋଷଗୁଡ଼ିକ ମିଳାଇଯାଇ ତା ସ୍ଥାନରେ କ୍ଷୀର ରହିବା ପାଇଁ ସ୍ଥାନ ସୃଷ୍ଟି ହୋଇଯାଏ । ପିଲା ଜନ୍ମର ତିନ ଚାରିଦିନ ପର୍ଯ୍ୟନ୍ତ ସାଧାରଣତଃ କିଛିଟା ହଳଦିଆ ପାଣିଚିଆ କ୍ଷୀର ବାହାରେ । କ୍ଷୀର ହେଉ ନାହିଁ ବୋଲି କେତେ ସ୍ତ୍ରୀ ଲୋକ ବ୍ୟସ୍ତ ହୋଇଯାଆନ୍ତି; କିନ୍ତୁ ଶିଶୁପାଇଁ ଏହାର ଆବଶ୍ୟକତା ଗୁରୁତ୍ୱପୂର୍ଣ୍ଣ ।

ଏହି ପାଣିଚିଆ କ୍ଷୀର ଖାଇଲେ ପିଲାର ପେଟ ସଫା ରହେ । ତା ପେଟରୁ ନାଳ ଓ ଅନ୍ୟାନ୍ୟ ମଇଳା ପଦାର୍ଥ ବାହାରିଯାଏ । ଏହି କ୍ଷୀରରେ ରୋଗ ନିବାରକ ଶକ୍ତି ବେଶୀ ଏବଂ ଏହା ଖାଇଲେ ମିଳିମିଳା ଓ ଲହରା କାଶ ଭଳି ସାଙ୍ଘାତିକ ରୋଗ ହୁଏନାହିଁ । ପାଞ୍ଚଦିନ ବେଳକୁ ଠିକ୍ କ୍ଷୀର ବାହାରିବା ସମ୍ପୂର୍ଣ୍ଣ ହୋଇଯାଇଥାଏ ଏବଂ ପିଲା ମଧ୍ୟ କ୍ଷୀର ଖାଇବା ପାଇଁ ତିଆରି ହୋଇଯାଇଥାଏ ।

ସାଧାରଣତଃ ଜଣେ ସୁସ୍ଥ ସ୍ତ୍ରୀଲୋକର ସ୍ତନରୁ ଦିନକୁ ଅଧ ଲିଟର କ୍ଷୀର ବାହାରେ କିନ୍ତୁ ସେଥିପାଇଁ ଲିଟର ଲିଟର ରକ୍ତ ସ୍ତନ ମଧ୍ୟରେ ସଞ୍ଚାରିତ ହୁଅନ୍ତି । ଏହି ରକ୍ତରୁ କ୍ଷୀର ଗ୍ରନ୍ଥି ମାନେ ଆବଶ୍ୟକୀୟ ଗ୍ଲୁକୋଜ ନେଇ ତାକୁ ଲାକ୍ଟୋଜରେ ପରିଣତ କରନ୍ତି; ଆମିନୋ ଏସିଡ଼ ନେଇ କ୍ଷୀରରେ ପୁଷ୍ଟିସାର କାଜନ୍‌ରେ ପରିଣତ କରନ୍ତି, ଲବଣ ନେଇ ତାକୁ କାଲସିଅମ୍‌ରେ ପରିଣତ କରନ୍ତି, ପୁଣି ବଞ୍ଚିବାପାଇଁ ଆବଶ୍ୟକୀୟ ଭିଟାମିନ ମିଶାନ୍ତି । କହନ୍ତୁ ଦେଖି ତ ଏଭଳି କାରଖାନା କେଉଁଟି ଅଛି ? ଧନ୍ୟ ସେ ବିଧାତା !

ବହୁ ସ୍ତ୍ରୀଲୋକଙ୍କର ଧାରଣା, ପିଲା କ୍ଷୀର ଟାଣି ଖାଇଲେ ସ୍ତନର ଆକାର ଏବଂ ସାଧାରଣ ଚେହେରା ଖରାପ ହୋଇଯିବ । ଏହି ଧାରଣାର ବଶବର୍ତ୍ତୀ ହୋଇ ଅନେକ ସନ୍ତାନକୁ ମାତୃସ୍ତନ୍ୟରୁ ବଞ୍ଚିତ କରୁଛନ୍ତି । କିନ୍ତୁ ଏହି ଭୟ ଅମୂଳକ ।

ପ୍ରକୃତରେ ଯେଉଁ ମାଂସପେଶୀ ସ୍ତନକୁ ଟାଣି ରଖିଛନ୍ତି ତାହା ବକ୍ଷବନ୍ଧନୀ ଭଳି । ତେଣୁ ପିଲା କ୍ଷୀରଟାଣି ଖାଇଲେ ଏହା ଶିଥିଳହେବାର ଭୟ ନାହିଁ । ପିଲା କ୍ଷୀର ଟାଣିଲାବେଳେ କ୍ଷୀରଭୁଣ୍ଡିରେ ଥିବା ସ୍ନାୟୁ-ମାନେ ଉତ୍ତେଜିତ ହୁଅନ୍ତି ଏବଂ ସଙ୍ଗେ ସଙ୍ଗେ ଏହାର ଖବର ମସ୍ତିଷ୍କର ପିଟୁଇଟାରୀ ଗ୍ରନ୍ଥିରେ ପହଞ୍ଚିଯାଏ । ଶରୀରରେ ଯେତେ ହର୍ମୋନ ବାହାରନ୍ତି ପିଟୁଇଟାରୀ ଗ୍ରନ୍ଥି ସମସ୍ତଙ୍କୁ ନିୟନ୍ତ୍ରଣ କରେ । ପିଟୁଇଟାରୀ ଏହି ଖବର ପାଇଲେ ସଙ୍ଗେ ସଙ୍ଗେ ଅକସିଟୋସିନ ନାମକ ଏକ ହର୍ମୋନ ରକ୍ତକୁ ଛାଡ଼ିଦିଏ । ମାତ୍ର ତିରିଶ ସେକେଣ୍ଡ ମଧ୍ୟରେ ଏସବୁ କାର୍ଯ୍ୟ ସମ୍ପନ୍ନ ହୁଏ । ତାହାପରେ ପିଲାକୁ ଆଉ କ୍ଷୀର ଟାଣିବାକୁ ପଡ଼େ ନାହିଁ । କ୍ଷୀରଗ୍ରନ୍ଥିଗୁଡ଼ିକ ଆପେ ଆପେ ସଙ୍କୁଚିତ ପ୍ରସାରିତ ହୋଇ କ୍ଷୀର ବାହାରି ଭୁଣ୍ଡି ତଳେ ଜମା ହୋଇଯାଏ । ଏହାପରେ ପିଲା ସ୍ତନ ଟଣାଟଣି ନକରି ଆପେ ଆପେ ପିଇବାରେ ଲାଗିଯାଏ । ତେଣୁ ପିଲାକୁ ସ୍ତନ୍ୟପାନ କରାଇଲେ ସ୍ତନର ଆକାର କିମ୍ବା ଚେହେରା ନଷ୍ଟ ହୁଏ ନାହିଁ । ସ୍ତନ୍ୟପାନ କରାଇଲେ ଗର୍ଭାଶୟର ଆକାର ଭଲ ରୁହେ ଏବଂ ଅନ୍ୟାନ୍ୟ ହର୍ମୋନ ପ୍ରଭାବରେ ଚର୍ମ ତଥା ମୁଖର ସୌନ୍ଦର୍ଯ୍ୟ ବୃଦ୍ଧି-ପାଏ । ତେଣୁ ସନ୍ତାନକୁ ଅନ୍ୟୂନ ଛଅ ମାସ ସ୍ତନ୍ୟପାନ କରାଇବା ଉଚିତ ।

କର୍କଟରୋଗ ସ୍ତନର ଏକ ସାଂଘାତିକ ରୋଗ । ଜରାୟୁ ଗ୍ରୀବା (Cervix) କାନ୍‌ସର ତଳକୁ ସ୍ତନ କାନ୍‌ସର ସ୍ତ୍ରୀଲୋକମାନଙ୍କଠାରେ ଅଧିକ ଦେଖାଯାଇଥାଏ । କିନ୍ତୁ ଏହାପାଇଁ ଏତେ ଚିନ୍ତିତ କିମ୍ବା ବିବ୍ରତ ହେବା ଉଚିତ ନୁହେଁ । ପ୍ରତି ସ୍ତ୍ରୀଲୋକ ମାସରେ ଥରେ ସକାଳେ ଶେଯରୁ ଉଠିଲାବେଳେ ବାମକଡ଼ ମାଡ଼ି ଶୋଇ ଡାହାଣ ହାତରେ ବାମ ସ୍ତନ ଏବଂ ଦକ୍ଷିଣ କଡ଼ ମାଡ଼ି ଶୋଇ ବାମ ହାତରେ ଦକ୍ଷିଣ ସ୍ତନ ପରୀକ୍ଷା

କରିବା ଆବଶ୍ୟକ । ବାମସ୍ତନ ସାଧାରଣତଃ ଦକ୍ଷିଣ ସ୍ତନଠାରୁ ସାମାନ୍ୟ ବଡ଼ । ସ୍ତନରେ ଯଦି କୌଣସି ଅସ୍ୱାଭାବିକ ମାଂସ ବୃଦ୍ଧି ହୋଇଥାଏ, ଏହି ପରୀକ୍ଷାରେ ସହଜରେ ଜଣାପଡ଼ିବ । ଶହେଟି ଅସ୍ୱାଭାବିକ ମାଂସ ବୃଦ୍ଧି ସ୍ତନରେ ପରୀକ୍ଷା କଲେ ସେଥିରୁ ପ୍ରାୟ ଅଶୀଟିରେ କ୍ୟାନସର ବାହାରିଥାଏ । ଏହି କଥା ଡାକ୍ତରମାନେ ଆଜିକାଲି ଭାରି ସୂକ୍ଷ୍ମରେ ଜାଣି ପାରୁଛନ୍ତି । ମେଡ଼ିକାଲ କଲେଜମାନଙ୍କରେ ଇଞ୍ଜେକସନ ଛୁଞ୍ଚି ସାହାଯ୍ୟରେ ଟିକିଏ ମାଂସ ନେଇ ପରୀକ୍ଷାକରି ଗୋଟିଏ ଦିନ ଭିତରେ ରିପୋର୍ଟ ଦିଆଯାଇ ପାରୁଛି । କଟକରେ କର୍କଟ ରୋଗ ନିରୂପଣ କେନ୍ଦ୍ରରେ ଏଥିପାଇଁ ଏକ ସ୍ୱତନ୍ତ୍ର ବିଭାଗ ବିଶେଷଜ୍ଞଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟ କରୁଛି । କିନ୍ତୁ ଥରେ ସ୍ତନ କ୍ୟାନସର ବାହାରିଲେ ତାହାପାଇଁ ଖାଇବାକୁ ଭଲ ଔଷଧ ନାହିଁ । ଅସ୍ତ୍ରୋପଚାର କରାଇନେବା ସୁବିଧାଜନକ ଏବଂ ଅପରେସନ୍ ପରେ ଶହେରେ ପଞ୍ଚାଅଶୀ ଜଣ ସ୍ତ୍ରୀଲୋକ ସମ୍ପୂର୍ଣ୍ଣ ସୁସ୍ଥ ଜୀବନଯାପନ କରନ୍ତି । ମୋର ବିଶ୍ୱାସ, ଏହି ବିଷୟଟି ପଢ଼ିସାରିଲା ପରେ ଆପଣମାନେ ନିଜ ନିଜ ପ୍ରଶ୍ନର ଉତ୍ତର ପାଇ ସାରିଛନ୍ତି ।



---

ଯେ କୌଣସି ମହାନ୍ ଲକ୍ଷ୍ୟପାଇଁ ଯେଉଁମାନେ ଲଢ଼େଇ କରନ୍ତି, ସେମାନଙ୍କର ସଂଖ୍ୟା ନୁହେଁ, ଗୁଣରୁ ହିଁ ସେମାନଙ୍କର ବିଚାର କରାଯାଏ ଓ ତାହାରି ଉପରେ ସେମାନଙ୍କର ଉଦ୍ୟମର ଫଳାଫଳ ନିର୍ଭର କରେ । ପୃଥିବୀରେ ଶ୍ରେଷ୍ଠ ବ୍ୟକ୍ତିମାନେ ଶ୍ରେଷ୍ଠ ବ୍ୟକ୍ତିମାନଙ୍କ ଜୀବନ ଆଲୋଚନା କଲେ ଜଣାଯାଏ ଯେ ସେମାନେ ସବୁବେଳେ ନିଜର ଆଦର୍ଶ ପାଇଁ ଏକୁଟିଆ ଠିଆ ହୋଇଛନ୍ତି ।

**—ମହାତ୍ମାଗାନ୍ଧୀ**

---

# ସ୍ତନ କର୍କଟ ରୋଗ

**ପ୍ରଶ୍ନ** - ମୋର ବୟସ ୩୨ ବର୍ଷ । ଦୁଇ ବର୍ଷତଳେ ଅତ୍ୟାଧୁନିକ 'ମିନି ଲାପ୍ରୋସ୍କୋପି' ସାହାଯ୍ୟରେ ପରିବାର ନିୟନ୍ତ୍ରଣ ଅପରେସନ ହୋଇଥିଲା । ସେହି ଦିନଠାରୁ ଏହି ଦୁର୍ଦ୍ଦଶା । ଏହା ପରେ ମୋର ମାସିକ ଋତୁସ୍ରାବରେ ଗଣ୍ଡଗୋଳ ହେଲା । ଠିକ୍ ସମୟରେ ଏହା ନ ହୋଇ ପ୍ରତି ମାସରେ ୧୦।୧୫ ଦିନ ଗଡ଼ିଗଲା । ତଳପେଟରେ ଯନ୍ତ୍ରଣା ହେଲା । ଧଳା ଧଳା ସ୍ରାବ ହେଲା ଏବଂ ଋତୁ ସମୟରେ ତଳପେଟରେ ଯନ୍ତ୍ରଣା ହେଲା । ସେଥିପାଇଁ ମୁଁ ବାରମ୍ବାର ବିଶିଷ୍ଟ ସ୍ତ୍ରୀରୋଗ ବିଶେଷଜ୍ଞଙ୍କ ସହିତ ପରାମର୍ଶ କରି ଔଷଧ ଚିକିତ୍ସା କଲି । ସେମାନେ ପରୀକ୍ଷା ପରେ ମୋର ଶାରୀରିକ କୌଣସି ରୋଗ ନାହିଁ ବୋଲି କହିଲେ ଏବଂ ଜନ୍ମ ନିୟନ୍ତ୍ରଣ ପରବର୍ତ୍ତୀ ମାନସିକ ଅସ୍ଥିରତା ବୋଲି ଚିକିତ୍ସା କଲେ । ମନକୁ ଅବସାଦ ମୁକ୍ତ କରିବାପାଇଁ କେତେକ ଔଷଧ ଏବଂ ନିଦ୍ରା ବଟିକା ଖାଇବାକୁ ପଡ଼ିଲା । ଏହାପରେ ନ କମିବାରୁ ମେଡ଼ିକାଲ କଲେଜରେ ମୋର ଜରାୟୁ ମୁଖରେ 'ଇଲେକଟ୍ରିକ୍ କଟ୍‌ରାଇଜେସନ୍' (ବିଦ୍ୟୁତ୍‌ସେକ) ଦିଆଗଲା ।

ଏଥିରେ ବିଶେଷ ଫଳ ହେଲା ନାହିଁ । ଆସ୍ତେ ଆସ୍ତେ ମୋର ଓଜନ କମିଗଲା । ଭୋକ ହେଲା ନାହିଁ । ପେଟରେ ଗ୍ୟାସ୍ ହୋଇ ପେଟ ଫମ୍ପାଇଲା । ଦିନେ ଦିନେ ପତଳା ଝାଡ଼ା ହେଲା ତ ଦିନେ ଦିନେ ହେଲା ନାହିଁ । ବାରମ୍ବାର ବିଶେଷଜ୍ଞ ଡାକ୍ତରଙ୍କ ଚିକିତ୍ସା ଓ ଖର୍ଚ୍ଚରେ ବ୍ୟସ୍ତ ହୋଇ ପରିବାରର ଲୋକେ ବିରକ୍ତ ହେଲେ । ଏପରିକି ମୋର ସ୍ୱାମୀ ତାଙ୍କର ଦୁର୍ଭାଗ୍ୟକୁ ନିନ୍ଦାକରି ମୋତେ ବିଭିନ୍ନ ସମୟରେ ଅପମାନ ଦେଲେ । ତାହାଙ୍କୁ ନ ପଚାରି ପରିବାର ନିୟନ୍ତ୍ରଣ କରିଥିବାରୁ ଶାଶୁ ତିରସ୍କାର କଲେ ।

ଆର୍ଥିକ ଅସଙ୍ଗତିରୁ ବର୍ଷେ ବିଶିଷ୍ଟ ହୋମିଓପାଥିକ ଚିକିତ୍ସକ ଏବଂ କବିରାଜମାନଙ୍କ ସହିତ ପରାମର୍ଶ କରି କୌଣସି ଲାଭ ହେଲାନାହିଁ ।

ଏହା ମଧ୍ୟରେ ମୋର ୧୦।୧୫ କେ.ଜି. ଓଜନ କମିଗଲା । ଉପର ପେଟରେ ସବୁବେଳେ ଯନ୍ତ୍ରଣା ଲାଗି ରହିଲା । ଶାଶୁଘରର ଅନିଚ୍ଛାସତ୍ତ୍ୱେ ମୋ ବାପା ମୋତେ ନେଇଗଲେ ଏବଂ ମେଡ଼ିସିନ୍ ସ୍ପେସାଲିଷ୍ଟଙ୍କ ସହିତ ପରାମର୍ଶ କଲେ । ଡାକ୍ତର ପରୀକ୍ଷା କଲାପରେ କହିଲେ ମୋର ଲିଭର ବଢ଼ିଯାଇଛି ଏବଂ ମୋର ହଳଦିଆ କାମଳ ଆରମ୍ଭ ହୋଇଛି । ୧୫ ଦିନ ଚିକିତ୍ସା ପରେ ବିଶେଷ କିଛି ନ କମିବାରୁ ସେ ମୋର ଝାଡ଼ା, ପରିସ୍ରା, ରକ୍ତର କେତେକ ବିଶେଷ ପରୀକ୍ଷାକଲେ ଏବଂ ମୋର ଲିଭରରୁ ମାଂସ ନେଇ ପରୀକ୍ଷା କରିବାକୁ ଉପଦେଶ ଦେଲେ । ମେଡ଼ିକାଲ କଲେଜର ପାଥୋଲୋଜି ଡ଼ିପାର୍ଟମେଣ୍ଟରେ ମୋର ଲିଭରରୁ ଇଞ୍ଜେକ୍‌ସନ ସାହାଯ୍ୟରେ ମାଂସ ପରୀକ୍ଷା କରି ଯେଉଁ ରୋଗ ନିରୂପଣ କଲେ ତାହା ମୋର ମୃତ୍ୟୁ ଘଣ୍ଟି । ବିଶେଷଜ୍ଞ ଡାକ୍ତରଙ୍କ ରିପୋର୍ଟ ଅନୁଯାୟୀ ମୋର ସ୍ତନର କର୍କଟ ରୋଗ (Breast Cancer) ରକ୍ତ ସାହାଯ୍ୟରେ ପ୍ରସାରିତ ହୋଇ ଲିଭରକୁ ଆକ୍ରାନ୍ତ କରିଛି । (BREAST CANCER METASTISIS IN LIVER)

ଏହାପରେ ପାଥୋଲୋଜି ବିଶେଷଜ୍ଞ ମୋର ସ୍ତନରେ ମାଂସ ବୃଦ୍ଧି ହୋଇଛି କି ନାହିଁ ପଚାରିଲେ । ପାଞ୍ଚବର୍ଷ ଧରି ମୋର ବାମ ସ୍ତନରେ ମାଂସ ବୃଦ୍ଧି ରହିଛି । ପ୍ରଥମ ଅବସ୍ଥାରେ ଏହି ବିଷୟ ମୋର ସ୍ୱାମୀଙ୍କୁ କହିବାରୁ ସେ ମୋତେ ନେଇ ଡାକ୍ତର ଦେଖାଇଥିଲେ । ତାଙ୍କ ଚିକିତ୍ସାପତ୍ର ଅନୁସାରେ ମୁଁ ଫାଇଲେରିଆ ପାଇଁ ଚିକିତ୍ସିତ ହୋଇଥିଲି । ତାହା ନ କମିବାରୁ ଅନ୍ୟ ଜଣେ ବିଶେଷଜ୍ଞ ଏହା ସାଧାରଣ 'ଟ୍ୟୁମର' (Fibroadenosis Breast) ବୋଲି କହିଥିଲେ ଏବଂ 'କାନସର'ଭାବି ମନଦୁଃଖ ନ କରିବାକୁ ପରାମର୍ଶ ଦେଇଥିଲେ । ସେହିଦିନଠାରୁ ସେ ବିଷୟରେ ମୁଁ ଆଦୌ ଚିନ୍ତିତ ନଥିଲି ।

ବର୍ତ୍ତମାନ ରୋଗ ନିରୂପଣ ପରେ ମୋର ପାଞ୍ଚବର୍ଷର ଅତୀତ ଘଟଣାବଳୀ ମନର ପରଦାରେ ନାଚିଯାଉଛି । ମାନସିକ ରୋଗ, ଫାଇଲେରିଆଠାରୁ ଆରମ୍ଭ କରି କେତେ ଟୁଣିଗାରେଡ଼, କବିରାଜ, ହୋମିଓପାଥି ଚିକିତ୍ସା ନକରିଛି ? ବର୍ତ୍ତମାନ ମୁଁ ଛେଳିଟିଏ, ମୃତ୍ୟୁଘାତକ

ଆଡ଼କୁ ଟାଣି ହୋଇଯାଉଛୁ । ଦଶବର୍ଷ ଘର ସଂସାରରେ ମୋର ବଡ଼ ପୁଅ ବୟସ ଆଠ ବର୍ଷ, ଝିଅ ବୟସ ଛଅ ବର୍ଷ । ମୋ ଜାଣତରେ ମୁଁ କୌଣସି ପାପକାର୍ଯ୍ୟ କରିନାହିଁ । ମୋର ଆର୍ଥିକ ସମ୍ବଳ ମଧ୍ୟରେ ଏବଂ ସୀମିତ ଆଧୁନିକ ଶିକ୍ଷାନୁସାରେ ବିଶେଷଜ୍ଞ ଡାକ୍ତରଙ୍କ ପରାମର୍ଶ କରିଛୁ । ମୋର ଦୋଷ କଣ ? ଜନ୍ମ ନିୟନ୍ତ୍ରଣ ଅପରେସନ୍ କ'ଣ ଏଭଳି କରାଏ ? ପ୍ରଥମ ଅବସ୍ଥାରେ 'ସ୍ତନ କାନସର' ଚିକିତ୍ସିତ ହୋଇଥିଲେ ମୁଁ ସମ୍ପୂର୍ଣ୍ଣ ଭଲ ହୋଇଯାଇଥାନ୍ତି ବୋଲି ଏବେ ଡାକ୍ତରମାନେ ମତ ଦେଉଛନ୍ତି । ନିଯତେବେଳେ ତାହା କଲେ ନାହିଁ କାହିଁକି ? ଏ ଅପରାଧ କଣ ଡାକ୍ତରଙ୍କର ନୁହେଁ ? ମୋର ବାପା ମୋତେ "ଟାଟା କାନସର ଇନଷ୍ଟିଚ୍ୟୁଟ୍" ବମ୍ବେ ନେବାପାଇଁ ଆୟୋଜନ କରୁଛନ୍ତି ଏବଂ ବର୍ତ୍ତମାନ ମୋ ପାଇଁ ଯେଉଁ ଚିକିତ୍ସା ହେଉଛୁ ସେଥିରେ ମାସରେ ପନ୍ଦର ଶହ ଟଙ୍କାର ଇଞ୍ଜେକସନ୍ ଲାଗୁଛୁ । ଏଭଳି ଚିକିତ୍ସାରେ ଜଣେ ରୋଗୀ କେତେ ଦିନରେ ଭଲ ହେବ । ଆପଣଙ୍କ ଜାଣତରେ କେତେ ରୋଗୀ ଭଲ ହୋଇଛନ୍ତି ? କଟକ ଭୁବନେଶ୍ୱରରେ ରହି ବିଶେଷଜ୍ଞ ଡାକ୍ତରଙ୍କ ସହିତ ବାରମ୍ବାର ପରାମର୍ଶ ସତ୍ତ୍ୱେ ଭାଗ୍ୟର କ୍ରୂର ପରିହାସରେ ମୋତେ ଏଭଳି ଭୋଗିବାକୁ ହେଲା । ମୋ'ର କରୁଣ ଜୀବନ କାହାଣୀ 'କାନସର'ର ଘନ ଅନ୍ଧକାର ମଧ୍ୟରେ ଓ୍ଲେଟିଆ ପାପଟିଏ ଜାଳୁ ।

**ଉତ୍ତର**—ବୟସ୍କ ମଣିଷଶରୀର ବୋଇଲେ ଆମେ ଯେଉଁ ସାଢ଼େ ପାଞ୍ଚଫୁଟ ଲମ୍ବା, ଷାଠିଏ କେଜି ଓଜନର ଏକ ଆକୃତିର କଳ୍ପନା କରୁ ତାହା ଖାଲି ମୁଣ୍ଡ, ଗଣ୍ଡି, ଗୋଡ଼, ହାତ ନୁହେଁ । ଏହା ନିୟୁତ, ନିୟୁତ ସୂକ୍ଷ୍ମ ଉପାଦାନରେ ଗଠିତ । ଏହି ସୂକ୍ଷ୍ମ ଉପାଦାନଗୁଡ଼ିକୁ ଡାକ୍ତରୀ ଭାଷାରେ କହନ୍ତି କୋଷ ଏବଂ ଏକ ବୟସ୍କ ମଣିଷ ଦେହରେ ପ୍ରାୟ ଛଅ ଶହ ବିଲିୟନ୍ କୋଷ ଅଛନ୍ତି । (ହଜାର ନିୟୁତ ଏକ ବିଲିୟନ) ସମୁଦାୟ ସଂଖ୍ୟାକୁ ହିସାବ କରନ୍ତୁ ତ ?

ଏକ କୋଷ ଏକ ସ୍ୱତନ୍ତ୍ର ସହର ପରି । ସହରରେ ବିଜୁଳି ଯୋଗାଣ ପାଇଁ ସବ୍‌ଷ୍ଟେସନ୍ ଥିଲାଭଳି ଗୋଟିଏ କୋଷ ଭିତରେ ଡଜନ ଡଜନ୍ ପାଓ୍ୱାରଷ୍ଟେସନ ଅଛନ୍ତି । ପରିବହନ ପାଇଁ ସୁଶୃଙ୍ଖଳ ପରିବହନ

ସଂସ୍ଥା ଏବଂ ଯୋଗାଯୋଗ ପାଇଁ ସୁଉନ୍ନତ ଯୋଗାଯୋଗ ସଂସ୍ଥା ମଧ୍ୟ ଅଛି । ଗୋଟିଏ କୋଷ ଉଗ୍ର ଏକଛତ୍ରବାଦୀ ସରକାର ଭଳି ପରିଚାଳନା ଓ ଶାସନ ଅତି ସୁଶୃଙ୍ଖଳ । ଏହା ବଞ୍ଚିବା ଓ ଚଳିବା ପାଇଁ ଆବଶ୍ୟକୀୟ କଞ୍ଚାମାଲ ଆମଦାନୀ କରେ, ଅଳିଆ, ଆବର୍ଜନା ସବୁ ବାହାର କରେ ଏବଂ ବାହାର ଶତ୍ରୁ ଆକ୍ରମଣରୁ ରକ୍ଷା ପାଇଁ ଆବଶ୍ୟକୀୟ ପୋଲିସ-ବାହିନୀ ମୁତୟନ କରେ । କିନ୍ତୁ ଗୋଟିଏ ବଡ଼ ସହରର ଶାସନ ପ୍ରଣାଳୀ ଅବଲମ୍ବନ କରୁଥିବା ଗୋଟିଏ କୋଷର ଆକାର କେତେ ବଡ଼ ଅନୁମାନ କରୁଛନ୍ତି ? ଏହା ଖାଲି ଆଖିରେ ଦେଖାଯାଏ ନାହିଁ । ସାଧାରଣ ଅଣୁବୀକ୍ଷଣ ଯନ୍ତ୍ରରେ ଦେଖାଯାଏ, ମାତ୍ର ଭିତର ସବୁ ସୂକ୍ଷ୍ମ ଉପାଦାନ ଚିହ୍ନି ହୁଏ ନାହିଁ । କେବଳ ମାତ୍ର ଅତି ଶକ୍ତିଶାଳୀ ଇଲେକ୍ଟ୍ରନ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଏହାର ସୂକ୍ଷ୍ମ ଉପାଦାନଗୁଡ଼ିକ ଚିହ୍ନା ପଡ଼େ । ସେଥିରେ ପୁଣି ସବୁକଥା ଜଣାନାହିଁ । ପ୍ରତ୍ୟେକ କୋଷ ଜୀବନର ମୌଳିକ ଅଙ୍ଗ । ପ୍ରକୃତରେ ତାହାହିଁ ଜୀବନ । ପ୍ରତ୍ୟେକ ଧର୍ମର ଆଚାର୍ଯ୍ୟ ଗୁରୁ, ବିଭିନ୍ନ ବୈଜ୍ଞାନିକ, ମନ, ବୁଦ୍ଧି ଓ ଜ୍ଞାନର ଉନ୍ମେଷ କାଳରୁ ଜୀବନ ତଥା ଆତ୍ମାର ସତ୍ତ୍ୱ ଖୋଜି ଚାଲିଛନ୍ତି । କୋଷର ପରୀକ୍ଷା ନିରୀକ୍ଷା ଏବଂ ବିଜ୍ଞାନାଗାରରେ ଏହାର କୃତ୍ରିମ ପ୍ରସ୍ତୁତ କେବଳ ଭବିଷ୍ୟତରେ ଏହାର ଉତ୍ତର ଦେଇପାରିବ ।

ପ୍ରକୃତରେ ଗୋଟିଏ ନିର୍ଦ୍ଦିଷ୍ଟ କୋଷ ବୋଇଲେ କିଛି ବୁଝାଏ ନାହିଁ । ଏହାର ଆକୃତି ପ୍ରକୃତି ବିଭିନ୍ନ, ଗୋଟିଏ ମୂଷା ଓ ଗୋଟିଏ ହାତୀ ମଧ୍ୟରେ ଥିବା ପାର୍ଥକ୍ୟଭଳି । ଗୋଟିଏ ବଡ଼ କୋଷର ଉଦାହରଣ ଓଟପକ୍ଷୀର ଡିମ୍ବ । ଓଟପକ୍ଷୀମାନେ ଆଫ୍ରିକାର ସାହାରା ମରୁଭୂମିରେ ବାସ କରନ୍ତି । ଏହି ଡିମ୍ବଗୁଡ଼ିକ ଏତେବଡ଼ ଯେ ସେଠାକାର ଆଦିମ ଅଧିବାସୀମାନେ ଏହା ମଝିରୁ ଭାଙ୍ଗି ଚାମାସୁ ପାତ୍ରରୂପେ ବ୍ୟବହାର କରନ୍ତି । ଅନ୍ୟ ପକ୍ଷରେ କ୍ଷୁଦ୍ର କୋଷଗୁଡ଼ିକ ଏପରି ଯେ ନିୟୁତ ନିୟୁତ କୋଷ ଗୋଟିଏ ଛୁଞ୍ଚି ମୁନରେ ରଖାଯାଇ ପାରିବ । କୋଷଗୁଡ଼ିକର ଆକୃତି ବିଭିନ୍ନ ପ୍ରକାରର; କେହି ଗୋଲାକାର, କେହି ଲମ୍ବା, କେହି ଚେପ୍ଟା, କେଉଁଠି ବାଡ଼ିଭଳି ଇତ୍ୟାଦି ।

ଶରୀର ଯାହା କାର୍ଯ୍ୟ କରେ ପ୍ରକୃତରେ ଏହି କୋଷଗୁଡ଼ିକ ସେହି କାର୍ଯ୍ୟ କରିଥାନ୍ତି । ଜଣେ ପଢ଼ିଲା କିମ୍ବା ଲେଖିଲାବେଳେ ତା'ର ମସ୍ତିଷ୍କ କୋଷ, ସ୍ନାୟୁକୋଷ, ମାଂସପେଶୀ କୋଷ ଏବଂ ଆହୁରି ଅନେକ ଶ୍ରେଣୀର କୋଷଗୁଡ଼ିକ କାମ କରନ୍ତି । ମସ୍ତିଷ୍କ କୋଷଗୁଡ଼ିକ କଥା ଧରାଯାଉ । ଗୃହିଁଲା କିମ୍ବା ଶୋଇଲାବେଳେ ଏମାନେ ଏଭଳି କାମ କରିଥାନ୍ତି ଯେ ପୃଥିବୀର ସବୁଠାରୁ ବଡ଼ ସ୍ୱୟଂଚାଳିତ ଟେଲିଫୋନ୍ ଏକ୍ସଚେଞ୍ଜ୍ ସେ କାମ କଲେ ଜାମ୍ ଧରିଯିବ । କେଉଁ ଖବର ମସ୍ତିଷ୍କକୁ ଯିବ, କଣ ନ ଯିବ ସବୁ ବାଛିବଛିର କାର୍ଯ୍ୟ ଚାଲିଥାଏ । ଜଣେ ମନୋନିବେଶ କରି ସୁନ୍ଦର ଉପନ୍ୟାସଟିଏ ପଢ଼ୁଥିବାବେଳେ ବାହାରର ଅନ୍ୟ କୌଣସି ଶବ୍ଦ ଏଭଳିକି ଗୀତ ମଧ୍ୟ ସେ ଶୁଣିପାରେ ନାହିଁ । ଶୋଇଥିବାବେଳେ ମଶାଟିଏ କାମୁଡ଼ିଲେ ମସ୍ତିଷ୍କର ନିର୍ଦ୍ଦେଶ ଅନୁସାରେ ହାତର କୋଷଗୁଡ଼ିକ ମଶା ଉପରେ ପ୍ରହାର କରିଥାନ୍ତି । ଏଭଳି ସୂକ୍ଷ୍ମ ନିୟନ୍ତ୍ରଣ କେଉଁ କମ୍ପ୍ୟୁଟର କରିପାରିବ କୁହନ୍ତୁ ତ ! ବଞ୍ଚିବା ପାଇଁ ଯେତିକି ଆବଶ୍ୟକୀୟ ଖବର ଠିକ୍ ସମୟରେ ଠିକ୍ ମୁତାବକ କାର୍ଯ୍ୟକାରୀ ହେଉଥାଏ । ବଡ଼ ବିଚିତ୍ର ସତେ !

ସବୁଠୁ ବଡ଼ ବିଚିତ୍ର ମାଆର ଡିମ୍ବ । ପୁରୁଷ ଶୁକ୍ରକୀଟ ସହିତ ଏହାର ମିଳନ ହେଲାପରେ ଏହା ବାରମ୍ବାର ବିଭିନ୍ନ କୋଷରେ ବିଭକ୍ତ ହୋଇ କୋଡ଼ିଏ ହଜାର ନିୟୁତ କୋଷରେ ପରିଣତ ହୁଏ । ମାତୃ ଗର୍ଭରେ ଏହି କୋଷଗୁଡ଼ିକର ରୂପାନ୍ତର ଗୋଟିଏ ଶିଶୁ ସନ୍ତାନ ଏବଂ ସବୁଠାରୁ ବଡ଼କଥା ଏହି ମିଳିତ କୋଷରେ ଏତେ ଖବର ଥାଏ ଯେ ତାହା ଜୀବନଚକ୍ରରେ ପ୍ରତିଫଳିତ ହେଉଥାଏ । ଭାଗବତର ବାଣୀ 'ପିତାମାତା ସଂଯୋଗ କାଳେ—ବିଧି ଯା ଲେଖିଛି କପାଳେ ।' ଏହି କୋଷରେ ଭବିଷ୍ୟତରେ ରଙ୍ଗ କଣ ହେବ, ଉଚ୍ଚତା କେତେ ହେବ, ଓଜନ କପଟ ରହିବ ସବୁ ଲିପିବଦ୍ଧ ଥାଏ । ଏଭଳି କି ମାନସିକ ବୁଦ୍ଧି, କେତେକ ରୋଗ, ସବୁ ଏଥିରେ ଲେଖାଥାଏ । ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଡିମ୍ବଗୁଡ଼ିକ ଦେଖିବାକୁ ଏକାଭଳି । କିନ୍ତୁ ଜୀବନର ମୂଳ ନକ୍ସା ଅନୁସାରେ ଗୋଟିଏ ତିମି ହୁଏତ ଅନ୍ୟ ଗୋଟିଏ ମାଙ୍କଡ଼ ଏବଂ ଆଉ ଗୋଟିଏ ମଣିଷ ହୁଏ । ସବୁ ଆଶ୍ଚର୍ଯ୍ୟ !

ସବୁ କୋଷରେ ବସ୍ତୁସ୍ତୁକର ପଦାର୍ଥର ନାମ ଡ଼ି. ଏନ୍. ଏ.—ଡ଼ିଅକ୍‌ସିରାଇବୋ ନିଉକ୍ଲିକ୍ ଏସିଡ୍ । ଏହି ପଦାର୍ଥର ଆବିଷ୍କାରକ ଓ୍ୱାଟସନ୍ କ୍ରିକ୍ ଶରୀରତତ୍ତ୍ୱରେ ନୋବେଲ୍ ପୁରସ୍କାର ପାଇଥିଲେ । କୋଷଟିଏ କିଭଳି କାମ କରିବ ସବୁ ଡି. ଏନ୍. ଏ. ନିର୍ଦ୍ଦେଶ ଦେଉଥାଏ । କୋଷ ବିଭାଜନ ଶରୀରରେ ଏକ ଅବିରତ ପ୍ରକ୍ରିୟା । ପ୍ରତି ମୁହୂର୍ତ୍ତରେ ନିୟୁତ ନିୟୁତ କୋଷ ମୃତ୍ୟୁବରଣ କରନ୍ତି ଏବଂ ନୂତନ କୋଷ ସୃଷ୍ଟି ହେଉଥାନ୍ତି । ଗୋଟିଏ କୋଷର ଆଭ୍ୟନ୍ତରୀଣ ଗଠନ ଅତି ଚମତ୍କାର । କୋଷ ଭିତରେ ଥିବା 'ମାଇଟୋ କଣ୍ଡ୍ରିଆ'ଗୁଡ଼ିକ ଶକ୍ତିର ଆଧାର । ସେମାନେ ଶର୍କରା ବ୍ୟବହାର କରି ବିଦ୍ୟୁତ୍ ଉତ୍ପାଦନ କରନ୍ତି ଏବଂ ଆଉ ଗୋଟିଏ ବିଶିଷ୍ଟ ଶକ୍ତି ସୃଷ୍ଟି କରନ୍ତି—ଯାହାର ନାମ ଆଡ଼େନୋସିନ୍ ଟ୍ରାଇଫସଫେଟ୍ । ଆଖି ପିଛୁଡ଼ା ମାରିବା, ନିଶ୍ୱାସ ପ୍ରଶ୍ୱାସରେ ବକ୍ଷ ମାଂସପେଶୀର ସଙ୍କୋଚନ-ପ୍ରସାରଣ, ହୃତ୍‌ପିଣ୍ଡର କମ୍ପନ ସବୁପାଇଁ ଆବଶ୍ୟକ ଶକ୍ତି କେବଳ ଆଡ଼େନୋସିନ୍ ଟ୍ରାଇଫସ୍-ଫେଟ୍‌ରୁ ହିଁ ମିଳିଥାଏ । ଏହା ବ୍ୟତୀତ କୋଷଗୁଡ଼ିକ ମଣିଷ ଜୀବନରେ ଛଅ ହଜାରରୁ ଊର୍ଦ୍ଧ୍ୱ ଏନଜାଇମ୍ ତିଆରି କରନ୍ତି ଯେଉଁ-ଗୁଡ଼ିକ ନଖ, ଦାନ୍ତ, ବାଳ, ମାଂସପେଶୀ, ରୋଗ ପ୍ରତିରୋଧ କରୁଥିବା ଆଣ୍ଟିବଡ଼ି ଲାଗି ବ୍ୟବହୃତ ହେଉଥିବା ଆମିନୋ ଏସିଡ୍ ଗଠନରେ ସାହାଯ୍ୟ କରନ୍ତି । ବର୍ତ୍ତମାନ ପରିସ୍ଥିତିରେ ମଧ୍ୟ ପୃଥିବୀର ସୁବୃହତ୍ ରସାୟନାଗାରମାନଙ୍କରେ ଏଭଳି ପଦାର୍ଥ ତିଆରି କରିବା ସମ୍ଭବ ନୁହେଁ ।

କୋଷର ଆଭ୍ୟନ୍ତରୀଣ ଗଠନ ଭଳି ବାହ୍ୟ ଆବରଣ ଏକ ବିଚିତ୍ର ସୃଷ୍ଟି । ଏହି ଆବରଣ ଗୋଟିଏ ମିଲିମିଟରର ନିୟୁତ ଭାଗରୁ ଭାଗେ ମୋଟା । ଇଲେକଟ୍ରନ୍ ଅଣୁବୀକ୍ଷଣ ଯନ୍ତ୍ରରେ ଏହା ସୁସ୍ପଷ୍ଟ ଦେଖାଯାଏ । ଏହି ଆବରଣ ଦ୍ୱାରପାଳ ଭଳି କାମ କରିଥାଏ । କୋଷ ଭିତରକୁ କେଉଁ ଜିନିଷ ଯିବ, କେଉଁ ଜିନିଷ ଯିବ ନାହିଁ ଏହା ବିଚକ୍ଷଣ ଭାବରେ ନିୟନ୍ତ୍ରଣ କରେ । କୋଷର ଜୀବନ ଏହା ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ । ଆବଶ୍ୟକୀୟ ନିୟନ୍ତ୍ରଣ ଦ୍ୱାରା କୋଷ ମଧ୍ୟରେ ଧାତବ ଲବଣ, ଜଳ ଏବଂ ଅନ୍ୟାନ୍ୟ ରାସାୟନିକ ପଦାର୍ଥ ନିର୍ଦ୍ଦିଷ୍ଟ ଅନୁପାତରେ ସ୍ଥିର ରହେ ଏବଂ

ଏହା ଏଭଳି ଏକଛତ୍ରବାଦୀ ଯେ ଅନ୍ୟ କୋଷ ସମୂହ ଏହା ନିକଟକୁ ଆସିଲେ ସେମାନଙ୍କୁ ପାଖରେ ରହିବାକୁ ଅନୁମତି ଦିଆଯାଏ ନାହିଁ । ଯେଉଁ କୋଷ ମନଇଚ୍ଛା ଯେଉଁଠାରେ ସେଠାରେ ବୃଦ୍ଧି ପାଇଲେ କିଭଳି ପରିସ୍ଥିତି ହେବ ଭାବନ୍ତୁ ତ ! ଜିଭରେ ଯଦି ବାଳକୋଷ ବୃଦ୍ଧି ହୁଏ, ଫୁସ୍‌ଫୁସ୍‌ର କୋଷ ଯଦି ମସ୍ତିଷ୍କରେ ବୃଦ୍ଧି ହୁଏ, ଆଖିରେ ଯଦି ହାଡ଼ ବୃଦ୍ଧି ହୁଏ ପ୍ରାଣୀ ବଞ୍ଚିବ କି ? ତେଣୁ ପ୍ରତି କୋଷରାଜକୁ ଅନ୍ୟ କୋଷ-ରାଜଙ୍କଠାରୁ ଚିହ୍ନି ଅଲଗା ରଖିବାକୁ ଶରୀରରେ ଏକଛତ୍ରବାଦ ଶାସନ ଚାଲୁରହିଛି କିନ୍ତୁ ଯେତେବେଳେ ଏହି ଶାସନରେ ବ୍ୟତିକ୍ରମ ହୁଏ ଏହାକୁ କହନ୍ତି କାନସର । କାନସର ସୃଷ୍ଟି ବୁଝାଇବା ପାଇଁ ଏହି ଦୂରାଭାସର ସୂଚନା । ନିୟମ ଅନୁସାରେ କୋଷ ବୃଦ୍ଧି ନ ହେଲେ ଏବଂ ଅସ୍ୱାଭାବିକ ଭାବେ ବୃଦ୍ଧି ପାଇଲେ ଏହାକୁ କହନ୍ତି କାନସର ।

ଏହି ନିୟମର ବ୍ୟତିକ୍ରମ ହେଲେ ସ୍ତନର କୋଷ ସବୁ ରକ୍ତରେ ଯାଇ ଯକୃତରେ ବଢ଼ନ୍ତି, ଏହାକୁ କହନ୍ତି ଯକୃତରେ ସ୍ତନ କର୍କଟ ରୋଗର ସଞ୍ଚାରଣ (Metastisis of Breast Cancer in Liver). ସେହିଭଳି ବହୁ ପ୍ରକାର କର୍କଟ ରୋଗ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସଞ୍ଚାରିତ ହୁଅନ୍ତି । ଶରୀରରେ ଏକଛତ୍ର ଶାସନ ପରିବର୍ତ୍ତେ ଗଣତନ୍ତ୍ର ଶାସନର ଅବଲମ୍ବନ ହିଁ କର୍କଟ ରୋଗ ।

ଆମ ରାଜ୍ୟରେ ସ୍ତ୍ରୀଲୋକମାନଙ୍କର ଜରାୟୁ ଗ୍ରୀବା ଏବଂ ସ୍ତନର କର୍କଟ ରୋଗ ବେଶି ଓ ପୁରୁଷମାନଙ୍କର ପାଟି ଏବଂ ତଣ୍ଟି କାନସର ବେଶି । ସବୁଠୁ ବଡ଼ କଥା ଏହି ସ୍ଥାନଗୁଡିକ ବିନା ଯନ୍ତ୍ରରେ କେବଳ ହାତରେ ଓ ଆଖିରେ ପରୀକ୍ଷା କରାଯାଇ ପାରିବ । କିନ୍ତୁ ବେଳେବେଳେ ବିଧିର ବିଧାନ ବିଚିତ୍ର । ଠିକ୍ ସମୟରେ ଠିକ୍ କଥା କରିହୁଏ ନାହିଁ । ମେଡ଼ିକାଲ କଲେଜର ଦୁଇଜଣ ବରିଷ୍ଠ ଅଧ୍ୟାପକ ସ୍ତନ କାନସର ଏବଂ ଅଣ୍ଡକୋଷ କାନସର ପ୍ରାଥମିକ ଅବସ୍ଥାରେ ହେଲା କରି ନିଜ ଜୀବନ ବିପନ୍ନ କରିଛନ୍ତି । ତେଣୁ ପ୍ରଥମ ଅବସ୍ଥାରେ ସନ୍ଦେହ ଏବଂ ଆନୁଷଙ୍ଗିକ ପରୀକ୍ଷା କରିବା ପାଇଁ ଆବଶ୍ୟକୀୟ ପଦକ୍ଷେପ ନେବା ଉଚିତ । ଲୋକମାନଙ୍କ ମନରେ କାନସର ଚେତନା ସୃଷ୍ଟି କରି

ପ୍ରାରମ୍ଭିକ ଅବସ୍ଥାରୁ ବିପଦମୁକ୍ତ ହେବାପାଇଁ ସାତଟି ଲକ୍ଷଣ ଡାକ୍ତରମାନେ ପ୍ରଚାର କରୁଛନ୍ତି । ଲକ୍ଷଣଗୁଡ଼ିକ ହେଲା—

୧ । ଘା’ ନ ଶୁଖିଲେ ।

୨ । ଖାଦ୍ୟ ହଜମ ହେବାରେ ଓ ଗିଳିବାରେ ସର୍ବଦା ଅସୁବିଧା ଅନୁଭବ କଲେ ।

୩। ଅନିୟମିତ ଋତୁସ୍ରାବ, ରକ୍ତସ୍ରାବ କିମ୍ବା ଶ୍ୱେତସ୍ରାବ ହେଲେ ।

୪ । ଝାଡ଼ାର ଅନିୟମିତତା—ଯଥା କୋଷ୍ଠକାଠିନ୍ୟ, ପତଳା ଝାଡ଼ା, ରକ୍ତ ଝାଡ଼ା, ନାଳ ଝାଡ଼ା ବାରମ୍ବାର ଲାଗି ରହିଲେ ।

୫ । କଣ୍ଠସ୍ୱର ପରିବର୍ତ୍ତନ ଲକ୍ଷ୍ୟ କଲେ ।

୬ । ସ୍ତନରେ ଗୋଟାଏ ଭଳି ଶକ୍ତ ମାଂସ ଅନୁଭବ କଲେ ।

୭ । କଳାଜାଇର ରଙ୍ଗ ଓ ଆକାର ପରିବର୍ତ୍ତନ ହେଲେ ।

ଏପରି ହେଲେ ଥରେ ଅଭିଜ୍ଞ ଡାକ୍ତରଙ୍କ ପରାମର୍ଶ କରିବା ଉଚିତ । ଏସବୁ ଲକ୍ଷଣ କ୍ୟାନସର ନଥାଇ ମଧ୍ୟ ହୋଇପାରେ । ବିନା ପରୀକ୍ଷାରେ ଆତଙ୍କିତ ହେବା ଉଚିତ ନୁହେଁ । କ୍ୟାନସର ଚିହ୍ନିବା ପାଇଁ କୋଷଗୁଡ଼ିକର ପରୀକ୍ଷା (Biopsy) ସବୁଠାରୁ ଶ୍ରେଷ୍ଠ ଉପାୟ । ମାତ୍ର ଗୋଟିଏ ଇଞ୍ଜେକ୍‌ସନ୍ ସାହାଯ୍ୟରେ ଆକ୍ରାନ୍ତ ସ୍ଥାନରୁ କେତେକ କୋଷ ନେଇ ଏହା ସହଜରେ ମେଡ଼ିକାଲ କଲେଜଗୁଡ଼ିକର ପାଥୋଲୋଜି ଡ଼ିପାର୍ଟମେଣ୍ଟରେ ପରୀକ୍ଷା କରାଯାଇ ପାରୁଛି । ଏହାବ୍ୟତୀତ ରକ୍ତ ପରୀକ୍ଷା, ଏକ୍‌ସ-ରେ, ଏଣ୍ଡୋସ୍କୋପି ପ୍ରଭୃତି ପରୀକ୍ଷାଦ୍ୱାରା ସହଜରେ ରୋଗ ନିରୂପଣ କରାଯାଇ ପାରୁଛି । ବହୁତ ପରୀକ୍ଷା ବିନାଖର୍ଚ୍ଚରେ କରାଯାଇ ପାରୁଥିଲେ ମଧ୍ୟ ସହରରେ ୩।୪ ଦିନ ରହି ଅଭିଜ୍ଞ ଡାକ୍ତରମାନଙ୍କ ପରାମର୍ଶ କରିବା ବ୍ୟୟବହୁଳ ହୋଇପଡ଼ୁଛି । କିନ୍ତୁ ଏସବୁ ସତ୍ତ୍ୱେ କୌଣସି ସନ୍ଦେହକୁ କିଛି ନୁହେଁ ବୋଲି କୌଣସି ପରୀକ୍ଷା ବିଶେଷ କରି କୋଷ ପରୀକ୍ଷା (Biopsy) ନକରି ଉପରଠାଉରିଆ ଭାବରେ ଉଡ଼ାଇଦେବା ବୁଦ୍ଧିମତାର ପରିଚୟସୂଚକ ନୁହେଁ । ଏ ଲକ୍ଷଣସବୁ ଶରୀରରେ ଅଠାନବେ ଜଣଙ୍କ ପାଇଁ କୌଣସି ବିପତ୍ତି ନ

ହୋଇପାରେ କିନ୍ତୁ ଯେଉଁ ଦୁଇ ଜଣଙ୍କର ବିପତ୍ତି ହେବ ତାଙ୍କ ପାଇଁ ଏହା ଶତକଡ଼ା ଶହେ । ମଝିରେ ମଝିରେ ସାଂଘାତିକ ରୋଗ ଯଥା କାନସର, ଡାଇବେଟିସ୍, ଉଚ୍ଚ ରକ୍ତଚାପ, ହୃଦ୍‌ରୋଗ, ଯକ୍ଷ୍ମା ପ୍ରଭୃତି ସନ୍ଦେହ କରି ପରୀକ୍ଷା କରିବା ବ୍ୟୟବହୁଳ ହୋଇପାରେ, କିନ୍ତୁ ଦୀର୍ଘ ଉନ୍ନତ ଜୀବନଯାପନ ପାଇଁ ଏହା ଯେ ଆବଶ୍ୟକୀୟ, ଏଥିରେ ଦ୍ୱିମତ ନାହିଁ । ମଣିଷ ଜୀବନର ବୈଷୟିକ ମୂଲ୍ୟ କିଏ ସ୍ଥିର କରିବ ?

ଯକ୍ଷ୍ମା ଭଳି କାନସର ରୋଗର ନିର୍ଦ୍ଦିଷ୍ଟ ଗୋଟିଏ କାରଣ ଏ ପର୍ଯ୍ୟନ୍ତ ନିଶ୍ଚିତଭାବେ ଜଣାନାହିଁ । ତେବେ ପରମାଣୁ ବିସ୍ଫୋରଣ, ବାୟୁମଣ୍ଡଳରେ ତେଜସ୍କ୍ରିୟ ପଦାର୍ଥର ବିକିରଣ, ଏ ରୋଗର କାରଣ ବୋଲି ଅନୁମାନ କରାଯାଉଛି । ସାଧାରଣତଃ ଆମ ରାଜ୍ୟରେ ଅଧିକ କଡ଼ାପାନ, ବିଡ଼ି ଖାଉଥିବା ଲୋକଙ୍କର ପାଟି କାନସର, ଅଧିକ ସନ୍ତାନ-ସନ୍ତତି ଥିବା ମହିଳାମାନଙ୍କର ଜରାୟୁ ଗ୍ରୀବା କାନସର, ପିଲା ନଥିବା ମହିଳାମାନଙ୍କର ସ୍ତନ କାନସର, ଅଧିକ ସିଗାରେଟ ଖାଉଥିବା ଲୋକଙ୍କର ଫୁସଫୁସ୍ କାନସର ଦେଖାଯାଏ । ତେବେ ଏସବୁ କିଛି ନ କରୁଥିବା ଲୋକଙ୍କର ମଧ୍ୟ କାନସର ହେଉଛି । ଆଗେ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ଲୋକମାନଙ୍କର ଅଧିକ କାନସର ଦେଖାଯାଉଥିଲା । ଏବେ ବୟସର ଆଉ କୌଣସି ମୂଲ୍ୟ ନାହିଁ । ପିଲାଠାରୁ ବୁଢ଼ା ସମସ୍ତେ ବର୍ତ୍ତମାନ ଏ ରୋଗ ଆଖିରେ ସମାନ ।

ସବୁଠୁ ବଡ଼ କଥା ରୋଗର ପୂର୍ବାବସ୍ଥା ଓ ପ୍ରଥମ ଅବସ୍ଥାରେ ଚିକିତ୍ସା କଲେ କାନସର ନିଶ୍ଚୟ ଆରୋଗ୍ୟ ହୁଏ । କିନ୍ତୁ ଆମରାଜ୍ୟରେ ସୀମିତ ଜ୍ଞାନ ଓ ସମ୍ବଳ ଏ ରୋଗ ଚିକିତ୍ସାର ପ୍ରଧାନ ଅନ୍ତରାୟ । ଶିକ୍ଷିତ କୁସଂସ୍କାରମୁକ୍ତ ରୋଗୀ, ଅନୁଭବୀ ଡାକ୍ତର, ଆର୍ଥିକ ସଙ୍ଗତି ଏକାଠି ନ ହେଲେ ବର୍ତ୍ତମାନ ପାଇଁ ସମସ୍ତ ରୋଗୀଙ୍କ ପକ୍ଷରେ ପ୍ରଥମାବସ୍ଥା କିମ୍ବା ପୂର୍ବାବସ୍ଥାରେ ଚିକିତ୍ସା ଅସମ୍ଭବ ।

ମଣିଷର ସୀମିତ ଜ୍ଞାନ ମଧ୍ୟରେ ସବୁ ସମୟରେ ଠିକ୍ କଥା ଭାବିହୁଏ ନାହିଁ, କରିହୁଏ ନାହିଁ । ଏହାକୁ ତ କହନ୍ତି ଭାଗ୍ୟ । ଡାକ୍ତର ସେଥିରୁ ବାଦ୍ ପଡ଼ିବେ କିମିତି ? ତେଣୁ ପ୍ରଥମାବସ୍ଥାରେ ଆପଣଙ୍କର

ରୋଗ ନ ଚିହ୍ନିବା ସେ ଡାକ୍ତରଙ୍କ ପାଇଁ ସୀମିତ ଜ୍ଞାନ, ହେଲା କମ୍ବା ଆପଣଙ୍କ ଆର୍ଥିକ ଅସଙ୍ଗତ ହୋଇପାରେ । ବହୁ ସମୟରେ ଅଧିକ ବିତ୍ତଶାଳୀ ଲୋକ ମଧ୍ୟ ପ୍ରାରମ୍ଭିକ ଚିକିତ୍ସା ମାଗଣାରେ କମ୍ବା ଅଳ୍ପ ଖର୍ଚ୍ଚରେ କରାଇବାକୁ ଚେଷ୍ଟା କରିଥାନ୍ତି । ବେଳେ ବେଳେ ଏହା ବିପଦର କାରଣ ହୋଇଥାଏ । ଜନ୍ମ ନିୟନ୍ତ୍ରଣ ଅପରେସନ୍ ସହିତ ସ୍ତନ କ୍ୟାନସରର ସମ୍ବନ୍ଧ ନାହିଁ । ଆପଣଙ୍କ ନିଜ କହିବା ଅନୁସାରେ ସ୍ତନର ଶକ୍ତ ଗୋଟାଳିଟି ଅପରେସନ୍ କରିବା ପୂର୍ବରୁ ଥିଲା । କ୍ୟାନସର ଶରୀରର ବିଭିନ୍ନ ଅଂଶକୁ ବ୍ୟାପୁଥିବା ବେଳେ ଚିକିତ୍ସା ବ୍ୟୟବହୁଳ । ତେବେ ଆପଣଙ୍କୁ ଚିକିତ୍ସା କରୁଥିବା ଡାକ୍ତରଙ୍କ ବ୍ୟକ୍ତିତ୍ୱରେ ଆପଣ ବିଶ୍ୱାସ କରନ୍ତୁ ଏବଂ ଆବଶ୍ୟକ ହେଲେ ଟାଟା କ୍ୟାନସର ଇନଷ୍ଟିଚ୍ୟୁଟ୍‌ର ପରାମର୍ଶ ନେଇପାରନ୍ତି ।

ମନ ବୁଝାନ୍ତୁ । ଏ ପୃଥିବୀ ବେଳେବେଳେ ବଡ଼ ଯନ୍ତ୍ରଣାଦାୟକ । ଦୁଃଖ ସୁଖ ଗୋଟିଏ ମୁଦ୍ରାର ଦୁଇଟି ପାଖ । 'କେହି ରହିନାହିଁ ରହିବେ ନାହିଁଟି ଭବ ରଙ୍ଗଭୂମି ତଳେ—ସବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।'

ଆପଣଙ୍କ ଶୁଭ କାମନା କରି ରହିଲି ।



---

ଆମେ ଯଦି ନୀଚ, ତେବେ ସେଇ ନୀଚତା ବାହାରେ ଦେଖାଇ ପାରିଲେ କେଡ଼େ ଭଲ ହୁଅନ୍ତା ? ଯଦି ଉଚ୍ଚ ବୋଲି ଦେଖାଇବାକୁ ମନ, ତେବେ ଉଚ୍ଚ କାମ, ଉଚ୍ଚ ଚିନ୍ତା କରି ଦେଖାଇ ଦେବା ଦରକାର । ନ ପାରିଲେ ତ ଆମେ ନୀଚ ବୋଲି ସମସ୍ତେ ଜାଣିବେ ।

—ମହାତ୍ମା ଗାନ୍ଧୀ

---

# କାନ୍‌ସର ରୋଗଠାରୁ ଦୂରେଇ ରହିବା ପାଇଁ
# ଚଉଦ ଗୋଟି ନୀତି

୧ । ସମସ୍ତ ପ୍ରକାର ଧୂମ୍ରପାନ ପରିହାର କରନ୍ତୁ । ସିଗାର, ସିଗାରେଟ ପାଇପ, ବିଡ଼ି, ପିକା ଆଦି ମୋଟେ ପାନ କରନ୍ତୁ ନାହିଁ ।

୨ । ମଦ୍ୟପାନଠାରୁ ଦୂରରେ ରହନ୍ତୁ । ମଦ୍ୟପାନ ସହିତ ଧୂମ୍ରପାନ କଲେ କାନ୍‌ସର ଆକ୍ରମଣର ଆଶଙ୍କା ଢେର୍ ବଢ଼ିଯାଏ ।

୩ । ପାଟିରେ ଦୁକୁତା କି ନାଶ ଜାକନ୍ତୁ ନାହିଁ ।

୪ । ଗୁଣ୍ଡି ବା ଜରଦା ଥିବା ପାନ ମୋଟେ ଖାଆନ୍ତୁ ନାହିଁ । ସାଦାପାନ ହେଲେ ବି ବେଶି ସଂଖ୍ୟାରେ ଖାଆନ୍ତୁ ନାହିଁ । ରାତିରେ କାଲରେ ପାନ ଜାକି ମୋଟେ ଶୁଅନ୍ତୁ ନାହିଁ ।

୫ । ଗୁଡ଼ାଖୁ ବା ନାଶରେ ଦାନ୍ତ ଘଷନ୍ତୁ ନାହିଁ ।

୬ । ଖାଦ୍ୟରେ କୌଣସି ପ୍ରକାର ରଙ୍ଗ ବ୍ୟବହାର କରନ୍ତୁ ନାହିଁ । ରଙ୍ଗମିଶା ହୋଇଥିବା ମିଷ୍ଟାନ୍ନ ଆଖିକୁ ଯେତେ ରୁଚିକର ହେଲେ ବି ଖାଆନ୍ତୁ ନାହିଁ । କାରଣ ଆପଣ ଜାଣିନାହାନ୍ତି ସେ ରଙ୍ଗ ଭଲ କି ଖରାପ ।

୭ । ନିଜର ଅନେକଗୁଡ଼ିଏ ସନ୍ତାନ ହେବାକୁ ଦିଅନ୍ତୁ ନାହିଁ ।

୮ । ନବଜାତ ସନ୍ତାନର ମାଆ ସନ୍ତାନକୁ ନିଜ ସ୍ତନ୍ୟପାନରୁ ବଞ୍ଚିତ କରନ୍ତୁ ନାହିଁ ।

୯ । ପୁରୁଷମାନେ ସେମାନଙ୍କ ଲିଙ୍ଗର ଅଗ୍ରଭାଗକୁ ଚମ ଖୋଲି ପ୍ରତିଦିନ ଗାଧୋଇବା ସମୟରେ ସଫା କରିବାକୁ ଅଭ୍ୟାସ କରନ୍ତୁ ।

୧୦ । ଦୂଷିତ ବାୟୁ ସେବନ କରନ୍ତୁ ନାହିଁ । ସିଗାରେଟ ଧୂଆଁ, ମଟରଗାଡ଼ି ଧୂଆଁ, କଳକାରଖାନା ଧୂଆଁ ଓ ଧୂଳି, ରାସ୍ତାଧୂଳିଠାରୁ ଦୂରରେ ରହନ୍ତୁ । ସେପରି ଧୂଆଁ ଧୂଳି ଥିଲେ ନାକରେ ରୁମାଲ ରଖନ୍ତୁ ।

୧୧ । ଖୋଲା ଦେହକୁ ଅଧିକ ସମୟଧରି ସଳଖ ଖରାକୁ ଦେଖାନ୍ତୁ ନାହିଁ ।

୧୨ । ପ୍ରତିଦିନ ଖାଦ୍ୟରେ କଞ୍ଚା ଶାଗ ଓ ଅଧିକ ପନିପରିବା ଖାଆନ୍ତୁ ।

୧୩ । ସ୍ତ୍ରୀ ଲୋକମାନେ ଚିପା ପୋଷାକ ଓ ଚୁପା ବ୍ରେସେରୀ କମ୍ ସମୟ ପାଇଁ ବ୍ୟବହାର କରନ୍ତୁ ।

୧୪ । ଶରୀରରେ କୌଣସି ପ୍ରକାର ଘାବସାର ଅସୁବିଧାକୁ ବେଶୀଦିନ ରହିବାକୁ ଦିଅନ୍ତୁ ନାହିଁ ।

# ଅର୍ଶ୍ୱାଧର

**ପ୍ରଶ୍ନ**—ମୋର ବୟସ ୪୧ ବର୍ଷ, ଛଅମାସ ତଳେ ମୁଁ ହଠାତ୍ ଦିନେ ବାଲ୍ଟିଏ ପାଣି ଉଠାଉ ଉଠାଉ ମୋ ଅଣ୍ଟାରେ ଝଟକା ପଶିଗଲା । ତା'ପରେ ମୁଁ ଆଉ ନଇଁ ପାରିଲି ନାହିଁ । ଝାଡ଼ାଯିବା କଷ୍ଟ ହେଲା । ୩।୪ ଦିନ ଏଇଭଳି ଅବସ୍ଥାରେ ଚଳପ୍ରଚଳ ହେବା ପରେ ମୋର ଗୋଡ଼ ତଳୁ ଉଠିଲା ନାହିଁ । ଅଣ୍ଟାରୁ ଜଙ୍ଘ ତଳଦେଇ ଖୁବ୍ ଜୋର୍‌ରେ ବିନ୍ଧିଲା । ଏପରି ଅବସ୍ଥା ହେଲା ଯେ, ମୋତେ ଖଟରେ ଶୋଇ ସେଠାରେ ଝାଡ଼ା ପରିସ୍ରା କରିବାକୁ ପଡ଼ିଲା । ମୁଁ ଏହାପରେ ବିଶ୍ରାମ ନେଇ ଡାକ୍ତରୀ ଚିକିତ୍ସା କରିବାରୁ ଏହା ସାମାନ୍ୟ କମିଛି । ଗତ ତିନି ମାସ ଧରି ମୋ ଅଣ୍ଟାରୁ ସମ୍ପୂର୍ଣ୍ଣ ଦରଜ ଯାଇନି । ୧୯୮୩ ମସିହାରେ ମୋର ଏଭଳି ଥରେ ହୋଇଥିଲା ଏବଂ ମୋତେ ସେତେବେଳେ ଅଣ୍ଟା ଏକ୍‌ସରେ କରି ବେଲଟ୍ ବାନ୍ଧିବାକୁ ପଡ଼ିଥିଲା । ଗତ କେତେ ବର୍ଷ ଧରି ମୁଁ ପ୍ରାୟ ସୁସ୍ଥ ଥିଲି । ମୁଁ ତିନୋଟି ପିଲାର ମା' ଏବଂ ଘରର ପ୍ରାୟ ସବୁ କାମ ମୋତେ କରିବାକୁ ପଡ଼ୁଛି । କ'ଣ କଲେ ମୁଁ ଏହି କଷ୍ଟଦାୟକ ରୋଗରୁ ସମ୍ପୂର୍ଣ୍ଣ ଆରୋଗ୍ୟ ହେବି ? ଏ ଯନ୍ତ୍ରଣା ଏଭଳି ହେଉଛି ଯେ, ନଇଁକରି କୌଣସି କାମ କରିବାକୁ ଅତି ଭୟ ଲାଗୁଛି । କେତେ ଲୋକ ଏଥିରୁ ଗୋଡ଼ ପାରାଲିସିସ୍ ହୋଇଯିବ ବୋଲି କହୁଛନ୍ତି । ଏଭଳି ହୁଏ କି ! ଅଣ୍ଟାର ଏକ୍‌ସରେ କରାଇଲେ କିଛି ଦୋଷ ବାହାରୁନାହିଁ । ରକ୍ତ, ଝାଡ଼ା, ପରିସ୍ରା ପରୀକ୍ଷାରେ କୌଣସି ଦୋଷ ବାହାରୁନାହିଁ । ଏ ବିଷୟରେ ମୋତେ କ'ଣ କରିବାକୁ ପଡ଼ିବ ?

**ଉତ୍ତର**—ବର୍ତ୍ତମାନ ଯୁଗରେ ଲକ୍ଷ ଲକ୍ଷ ଲୋକ ସାରା ପୃଥିବୀରେ ଏହିପରି ଅଣ୍ଟାଧରା ରୋଗ ଭୋଗ କରୁଛନ୍ତି । ବଞ୍ଚିବା ଭିତରେ ପ୍ରତି ୧୦ ଜଣରେ ପ୍ରାୟ ୮ ଜଣ ଲୋକ କୌଣସି ନା କୌଣସି ସମୟରେ ଅଣ୍ଟା-ଧରା ରୋଗ ଭୋଗ କରନ୍ତି । ଯେ କୌଣସି କାରଣ ଅଣ୍ଟାଧରା ରୋଗ କରିବା ପାଇଁ ସାହାଯ୍ୟ କରିଥାଏ । ଘର ଝାଡ଼ା, ଘର ସଫା, ପାଣି ବାଲ୍ଟିଏ

ଉଠାଇବାଠାରୁ ଆରମ୍ଭ କରି ଦାନ୍ତ ଘଷିବା,କାଶିବା, ଛିଙ୍କିବା ସମୟରେ ବି ହଠାତ୍ ଅଣ୍ଟାରେ ଉକା ପଶିଯାଏ । ବେଳେବେଳେ ଉକ୍ସା ଧକ୍‌ଚକ୍, ଦୂର ରାସ୍ତାକୁ ମଟର ଗାଡ଼ିରେ ପଛରେ ବସି ଯିବା, ହଠାତ୍ ଗାଡ଼ିରେ ବ୍ରେକ୍ ଦେବା ମଧ୍ୟ ଅଣ୍ଟା ଧରିବାର କାରଣ ହୋଇଥାଏ । କି ବୃଦ୍ଧ କି ଯୁବକ, କି ପୁରୁଷ କି ସ୍ତ୍ରୀ, ଯେ କୌଣସି ବୃତ୍ତିର ଲୋକ—ସମସ୍ତେ ଏ ରୋଗର ଶିକାର ହୁଅନ୍ତି । କେବଳ ଥରେ ଏ ରୋଗ ଭୋଗ କରିଥିବା ଲୋକ ଜାଣିପାରିବ ଯେ, ହଠାତ୍ ଭଲ ଲୋକ ଉପରେ କୌଣସି ରୋଗ-ବୈରାଗ ନଥାଇ ଅସହାୟ ବୋଧକରେ ଏବଂ ଯନ୍ତ୍ରଣା ଯଦିଓ ସ୍ୱଳ୍ପ ସମୟ ସ୍ଥାୟୀ, ଏହା କେତେ ତୀବ୍ରତର । ସବୁ କାମ ହଠାତ୍ ବନ୍ଦ ହୋଇ-ଯାଏ, ପାଦରେ ପ୍ରତ୍ୟେକ ଗତି ବିପଦସଙ୍କୁଳ ହୋଇପଡ଼େ, ଆଉ ସବୁଠୁ ବେଶି ଯନ୍ତ୍ରଣାଦାୟକ ପାଇଖାନା ଯିବା ଏବଂ ଯୌନକ୍ରିୟା ଏକବାର ଅସମ୍ଭବ ବୋଧହୁଏ ।

କଟିଶୂଳ ବାତ ହୁଏ କାହିଁକି ? ନ୍ୟୁୟର୍କସ୍ଥିତ କଲମ୍ବିଆ ମେଡ଼ିକାଲ ସେଣ୍ଟରର ଅସ୍ଥିଶଲ୍ୟ ବିଶେଷଜ୍ଞ ଡଃ ହ୍ୟୁଗୋ କମ୍ କହନ୍ତି—ମଣିଷ ଯେତେବେଳେ ପ୍ରଥମେ ଦୁଇ ଗୋଡ଼ରେ ଛିଡ଼ାହେବାକୁ ଚେଷ୍ଟା କଲା, ସେହିଦିନଠାରୁ ତା'ର ଏହି ରୋଗ ସୃଷ୍ଟି ପାଇଁ ବାଟ ତିଆରି କଲା । କଥାଟା ସରଳ କରିଦେଲେ ବୁଝାଯାଇପାରେ ଯେ, ସବୁ ପ୍ରାଣୀ ପରି ବିବର୍ତ୍ତନ ସମୟରେ ମଣିଷ ମଧ୍ୟ ଚାରି ଗୋଡ଼ରେ ଚାଲୁଥିଲା । ଦୁର୍ବଳ ମଣିଷ ବହୁତ ସମୟରେ ହିଂସ୍ର ପଶୁ, ବ୍ୟାଘ୍ର ସିଂହଙ୍କର ଏକ ସହଜ-ଲବ୍ଧ ଶିକାର ହେଉଥିଲା । ଦିନେ ହଠାତ୍ ଏକ ବ୍ୟାଘ୍ର ଆକ୍ରମଣର ପ୍ରତିରୋଧ କରିବା ପାଇଁ ବୁଦା ଉହାଡ଼ରେ ଆତଙ୍କିତ ମଣିଷ ପ୍ରଥମେ ପଛ ଦୁଇ ଗୋଡ଼ରେ ଛିଡ଼ା ହୋଇଗଲା ଏବଂ ଭୟଙ୍କର ବ୍ୟାଘ୍ର ମୁହଁକୁ ଅନାଇ ରହିଲା । ଶିକାରର ଏଭଳି ଅଦ୍ଭୁତ ପରିବର୍ତ୍ତନରେ ହୁଏତ ପ୍ରଥମେ ବ୍ୟାଘ୍ର ଭୟ ଖାଇ ପଳାୟନ କରିଛି ଏବଂ ଏଭଳି ପରିସ୍ଥିତିରେ ଦୁର୍ଲଭ ଜୀବନକୁ ଯେ ଉପଭୋଗ କରିହେବ, ସେ କଥା ପ୍ରଥମେ ମଣିଷ ସେଇଦିନଠାରୁହିଁ ଶିକ୍ଷା କରିଛି । ପରବର୍ତ୍ତୀ ପରିସ୍ଥିତିରେ ମସ୍ତିଷ୍କ ଏବଂ ହସ୍ତର ସୂକ୍ଷ୍ମ ପରିଚାଳନା ଦ୍ୱାରା ମଣିଷ ପ୍ରାଣୀଜଗତ ସମେତ ସମଗ୍ର ପ୍ରକୃତିକୁ କରଗତ କରିପାରିଛି । ଏହି ସହଜଲବ୍ଧ ଜୀବନ ପ୍ରତିଷ୍ଠା

ପାଇଁ ତା'ର ବଂଶଧରମାନେ ଆଜି କଟିଶୂଳ ରୋଗରେ ପୀଡ଼ିତ; କାରଣ ମଣିଷ ବ୍ୟତୀତ ଅନ୍ୟ କୌଣସି ପ୍ରାଣୀଙ୍କର କଟିଶୂଳ ରୋଗ ହୁଏ ନାହିଁ ।

ଏହା ବ୍ୟତୀତ ବର୍ତ୍ତମାନ ସଭ୍ୟ ଜୀବନ ଅନେକାଂଶରେ ଅଣ୍ଟା-ଧରା ପାଇଁ ଦାୟୀ । କେନେଥ୍ କାଶି ନାମରେ ଯନ୍ତ୍ରଣାବିଶେଷଜ୍ଞ କହନ୍ତି— ମାନସିକ କାର୍ଯ୍ୟ ବୃଦ୍ଧି ପାଇଲେ ଲୋକ ଆସ୍ତେ ଆସ୍ତେ କୌଣସି ଶାରୀରିକ ପରିଶ୍ରମ କିମ୍ବା ବ୍ୟାୟାମ କରିବାକୁ ବେଳ ପାଏ ନାହିଁ; ଓଜନ ବଢ଼ିଯାଏ ଏବଂ ଅଣ୍ଟା ଉପରେ ଏହାର କୁପ୍ରଭାବ ପଡ଼େ ।

ଏହିଭଳି ବେଳେବେଳେ ଅଣ୍ଟାଧରାକୁ ଛାଡ଼ିଦେଲେ ଅଣ୍ଟା ଭଗବାନଙ୍କ ସୃଷ୍ଟିରେ ସବୁଠୁ ମଜଭୁତ ଅଙ୍ଗ ଏବଂ ଏହା ଏଭଳି ଇଞ୍ଜିନିୟରିଂ କୌଶଳରେ ସୃଷ୍ଟି ଯେ, ଏହାଠାରୁ ଉନ୍ନତ ସୃଷ୍ଟି ହେବା ଅସମ୍ଭବ । ଅଣ୍ଟା ମେରୁଦଣ୍ଡର ଏକ ଅଙ୍ଗ । ବେକମୂଳଠାରୁ ମଳଦ୍ୱାର ପର୍ଯ୍ୟନ୍ତ ୩୩ ଖଣ୍ଡ ମେରୁ ହାଡ଼ରେ ଗଠିତ ମେରୁଦଣ୍ଡ ଶରୀରର ଏକ ପ୍ରଧାନ ଅବଲମ୍ବନ । ଗୋଟିକ ଉପରେ ଗୋଟିଏ ଖଞ୍ଜା ହୋଇ ଏହା ତିଆରି ହୋଇଛି । ଏହି ମେରୁଦଣ୍ଡ ଉପର ୨୦ ଖଣ୍ଡ ହାଡ଼ ଚଳନଶୀଳ ଏବଂ ତଳ ୯ ଖଣ୍ଡ ହାଡ଼ ଚଳନଶୀଳ ନୁହନ୍ତି । ଏହି ଚଳନଶୀଳ ମେରୁ ହାଡ଼ ମଝିରେ ଉପାସ୍ଥି (Inter vertebral disc)ରେ ଏକ ଗଦି ଥାଏ । ପ୍ରତ୍ୟେକ ମେରୁ ଅସ୍ଥିର ମଝିରେ ଗୋଟିଏ ରନ୍ଧ୍ର ଥାଏ; ତେଣୁ ସେଗୁଡ଼ିକ ଯେତେବେଳେ ଗୋଟିଏ ପରେ ଗୋଟିଏ ଗୁନ୍ଥି ହୋଇ ରହନ୍ତି, ସେତେବେଳେ ମେରୁଦଣ୍ଡର ମଝିରେ ଗୋଟିଏ ନାଳ ହୋଇଯାଏ । ଏହି ନାଳ ଭିତରେ ଦେଇ ସୁଷୁମ୍ନା କାଣ୍ଡ (spinal cord) ଉପରୁ ତଳ ପର୍ଯ୍ୟନ୍ତ ଲମ୍ବିଥାଏ । ଦୁଇଟି ମେରୁ ଅସ୍ଥିର ସଙ୍ଗମ ସ୍ଥଳର ଦୁଇ ପାଖରେ ଦୁଇଟି ଛୋଟ ନାଳ ଥାଏ ଏବଂ ସେ ବାଟେ ସୁଷୁମ୍ନା କାଣ୍ଡରୁ ସ୍ନାୟୁଗୁଡ଼ିକ ବାହାରି ଶରୀରର ବିଭିନ୍ନ ସ୍ଥାନକୁ ଯାଇଥାନ୍ତି । ମେରୁଦଣ୍ଡ ଏଭଳି ଦୃଢ଼ ଭାବରେ ତିଆରି ହେବାଦ୍ୱାରା କଟିଶୂଳ ରୋଗ ସହଜରେ ହେବା ସ୍ୱାଭାବିକ ନୁହେଁ । ସର୍କସର ଝିଅ ଅଣ୍ଟାକୁ ଅର୍ଦ୍ଧ-ବୃତ୍ତାକାର କରିପାରନ୍ତି; କିନ୍ତୁ ସେମାନଙ୍କର ଅଣ୍ଟାରେ କୌଣସି ଯନ୍ତ୍ରଣା ହୁଏ ନାହିଁ ।

ତେବେ ଏ ଯନ୍ତ୍ରଣା ହୁଏ କାହିଁକି ? ମେରୁଦଣ୍ଡ ହାଡ଼ ମଧ୍ୟରେ ଯେଉଁ ଉପାସ୍ଥି ଅଛି, ତାହାର କ୍ଷୟ ହେଲେ ଏହି କଟୀଶୂଳ ବାତ ହୋଇଥାଏ । ବହୁତ ସମୟରେ ଏହି ଉପାସ୍ଥିର କ୍ଷୟ ସୁଷୁମ୍ନା କାଣ୍ଡରୁ (spinal cord) ବାହାରୁଥିବା ସ୍ନାୟୁକୁ ଚାପ ଦେଲେ ଯନ୍ତ୍ରଣା ସୃଷ୍ଟି ହୋଇଥାଏ । ବେଳେବେଳେ ଉପାସ୍ଥି କ୍ଷୟ ନହୋଇ ଅତ୍ୟଧିକ ପରିଶ୍ରମ କରୁଥିବା ଲୋକର ପିଠି ମାଂସପେଶୀ ପ୍ରସାରଣ-ସଙ୍କୋଚନରେ ଅସୁବିଧା ସୃଷ୍ଟି ହେଲେ ଏହା ଅତ୍ୟଧିକ ସଙ୍କୁଚିତ ହୋଇ ଯନ୍ତ୍ରଣା ସୃଷ୍ଟି କରେ । ବେଳେବେଳେ ଦୁର୍ଘଟଣାରେ ଏହି ଉପାସ୍ଥି ଫାଟିଯାଏ ଏବଂ ସେଥିରୁ ଯୌଗିକ ପଦାର୍ଥସବୁ ବାହାରି ମେରୁହାଡ଼ର ସ୍ଥାନକୁ ସଙ୍କୀର୍ଣ୍ଣ କରିଦିଏ । ଏଥିଯୋଗୁଁ ସ୍ନାୟୁମାନେ ମଧ୍ୟ ଆଘାତପ୍ରାପ୍ତ ହେବାରୁ ଅତ୍ୟଧିକ ଯନ୍ତ୍ରଣା ହୁଏ । ବେଳେବେଳେ ମେରୁହାଡ଼ର ଗ୍ରେଟ ଗ୍ରେଟ ଗଣ୍ଠିର କ୍ଷୟହେବାରୁ ସ୍ନାୟୁମାନେ ମଧ୍ୟ ଆକ୍ରାନ୍ତ ହୁଅନ୍ତି ଏବଂ ସ୍ନାୟୁଗୁଡ଼ିକ ଆକ୍ରାନ୍ତ ହେଲେ ଏହି ଅଣ୍ଟାଧରି ସାଙ୍ଗକୁ ଗୋଡ଼ତଳ ମଧ୍ୟ ଧରେ । ଏହାକୁ ଆମେ ସିଆଟିକା ବୋଲି କହୁ । ପ୍ରକୃତରେ ସିଆଟିକା (Sciatica ) ଏକ ଡାକ୍ତରୀ ଶବ୍ଦ । ଅଣ୍ଟାରୁ ଜଙ୍ଘ ତଳ ଦେଇ ଗୋଡ଼ ପର୍ଯ୍ୟନ୍ତ ଯେଉଁ ସ୍ନାୟୁ ଯାଇଛି ତାହାକୁ ଡାକ୍ତରୀ ଭାଷାରେ କହନ୍ତି ସିଆଟିକ ନର୍ଭ (Sciatic nerve), ତେଣୁ ଏହି ସ୍ନାୟୁର ପ୍ରଦାହକୁ କହନ୍ତି ସିଆଟିକା ।

ଏଭଳି ରୋଗ ଥରେ ହେଲେ କାଠ ଖଟରେ ବିନା ଶେଯରେ ଶୋଇରହିବା ଆବଶ୍ୟକ ଏବଂ ଉଷୁମ ପାଣି ବୋତଲରେ ପୂରାଇ କମ୍ବା ରବର ବ୍ୟାଗରେ ପୂରାଇ ସେକଦେବା ଆବଶ୍ୟକ । ପୁରୁଣା ଜଡ଼ାତେଲ ଆସ୍ତେ ଆସ୍ତେ ମାଲିସ କରି ସକାଳେ ଥରେ ଓ ସନ୍ଧ୍ୟାରେ ଥରେ ଉଷୁମ ଲୁଣପୁଡ଼ାରେ ସେକ ଦେଲେ ଆରାମ ମିଳିଥାଏ । ଝାଡ଼ା ସଫା ନ ହେଲେ ହରିଡ଼ା, ବାହାଡ଼ା, ଅଁଳା ପ୍ରତ୍ୟେକରୁ ଗୋଟିଏ ଲେଖାଏଁ ଛେଚି ଏକଗ୍ଲାସ ପାଣିରେ ଗୋଳାଇ ସକାଳ ସନ୍ଧ୍ୟାରେ ପିଇଲେ ଝାଡ଼ା ସଫା ହୁଏ କମ୍ବା ଇସବ୍‌ଗୁଲ ଭୂଷି ଗୁଣ୍ଡ ଚାମୁଚ ଏକଗ୍ଲାସ ପାଣିରେ ରାତିରେ ପିଇଲେ ଝାଡ଼ା ମଧ୍ୟ ପରିଷ୍କାର ହୋଇଥାଏ । ଏହିଭଳି ସାତଦିନ ପରେ ସାଧାରଣତଃ ବହୁତ ଅଣ୍ଟାଧରି କମିଯାଇଥାଏ । ଦରଜ କମିଗଲାପରେ

•

ଅଣ୍ଟାର ମାଂସପେଶୀକୁ ଦମ୍ଭ କରିବା ପାଇଁ କେତେଗୁଡ଼ିଏ ବ୍ୟାୟାମ କରିବା ଉଚିତ । ଯଥା—ଚିତ୍‌ହୋଇ ଶୋଇରହି ଆସ୍ତେ ଆସ୍ତେ ଉପରକୁ ଅଣ୍ଟା ଉଠାଇବା ଦରକାର । ଚିତ୍‌ହୋଇ ଶୋଇରହି ଦୁଇ ଆଣ୍ଠୁକୁ ଦୁଇ ହାତରେ ପେଟରେ ଲଗାଇ ମୁଣ୍ଡ ଉଠାଇବା ଆବଶ୍ୟକ । ଏହା ବ୍ୟତୀତ ତଳକୁ ମୁହଁକରି ଶୋଇ ଦୁଇହାତକୁ ଅଣ୍ଟା ଉପରେ ରଖି ପ୍ରଥମେ ବାମ ଗୋଡ଼, ତା'ପରେ ଡାହାଣଗୋଡ଼ ଏବଂ ପରେ ପରେ ଦୁଇଗୋଡ଼ ଆଣ୍ଠୁ ସିଧାକରି ଉପରକୁ ଉଠାଇବା ଦରକାର । ଏହିଭଳି ବ୍ୟାୟାମ ପ୍ରତିଦିନ ସକାଳ ସନ୍ଧ୍ୟାରେ ଦଶମିନିଟ କରିବା ଆବଶ୍ୟକ । ଏଭଳି ରୋଗୀ ନଇଁକରି କୌଣସି ଅତି ଓଜନ ଜିନିଷ ଉଠାଇବା ଉଚିତ ନୁହେଁ । ନଇଁକରି ଉଠାଇବାକୁ ହେଲେ ଆଣ୍ଠୁ ବଙ୍କାକରି, ଆଣ୍ଠୁରେ ଭରଦେଇ, ଶରୀରକୁ ଲଗେଇ ଭାରି ଜିନିଷ ଉଠାଇବା ଦରକାର । ଏଭଳି ନ କଲେ ହଠାତ୍ ଅଣ୍ଟାରେ ରକ୍ତ ପଶିଯାଏ । ମଝି ହାଡ଼ର ଦରଜ କମିଗଲା ପରେ ଦୌଡ଼ିବା, ପହଁରିବା, ସାଇକେଲ ଚଳାଇବା ପ୍ରଭୃତି ଅଭ୍ୟାସ କଲେ ଅଣ୍ଟାର ମାଂସପେଶୀ ଟାଣ ହୋଇ ପରବର୍ତ୍ତୀ କାଳରେ ଅଣ୍ଟାଧରା ରୋଗ ହୁଏ ନାହିଁ । କିନ୍ତୁ ଅସମତଳ ରାସ୍ତାରେ ସ୍କୁଟର, ମଟରସାଇକେଲ କିମ୍ବା ମୋଟରରେ ଧକ୍କଡ଼ ଚକଡ଼ ହୋଇ ଗଲେ ଅଣ୍ଟାଧରା ହେବା ସ୍ୱାଭାବିକ ।

ଏହି ସୂକ୍ଷ୍ମ ଚିକିତ୍ସାରେ ସାତଦିନ ଭିତରେ ଉପଶମ ନହେଲେ ଆସପିରିନ କିମ୍ବା ଫିନାଇଲ ବୁଟାଜୋନ୍ ବଟିକା ଖାଦ୍ୟ ଖାଇସାରି ଗୋଟିଏ ଲେଖାଏଁ ଦିନକୁ ତିନିଥର ଖାଇବା ଆବଶ୍ୟକ । ଅନେକଙ୍କର ଧାରଣା, ଆସପିରିନ୍ ବଟିକା ଖାଇଲେ ହୃତ୍‌ପିଣ୍ଡ ଦୁର୍ବଳ ହୋଇଯାଏ, କିନ୍ତୁ କଥାଟା ସତ ନୁହେଁ । ଆଜକାଲି ଏକ ପରୀକ୍ଷାରୁ ଦେଖାଯାଇଛି ଯେ, ସୁସ୍ଥ ଲୋକ ଚାଳିଶବର୍ଷ ପରେ ଦୈନିକ ଗୋଟିଏ ଆସପିରିନ୍ ବଟିକା ଖାଇସାରିଲା ପରେ ଖାଇଲେ କରୋନାରୀ ଥ୍ରମ୍ବୋସିସ୍ ପରି ସାଂଘାତିକ ହୃଦ୍‌ରୋଗ ହୁଏନାହିଁ । କିନ୍ତୁ ଆସ୍ପିରିନ ଖାଇଲାବେଳେ କେତେକ ନିୟମ ମାନି ଖାଇବା ଆବଶ୍ୟକ । ଖାଲିପେଟରେ ଖାଇଲେ ପ୍ରାୟ ଶହେ ଜଣରେ ଦୁଇ ଜଣଙ୍କର ପେଟପୋଡ଼ା ରୋଗ ହୁଏ, ଆମ୍ଳିକା

ଆକୁଡ଼ି ହୁଏ ଏବଂ ଅକସ୍ମାତ୍ କେତେ ଲୋକଙ୍କର ରକ୍ତବାନ୍ତି ମଧ୍ୟ ହୋଇଥାଏ । ତେଣୁ ପେଟ ମହୁ ରୋଗୀମାନେ ଏଭଳି ବଟିକା ଖାଇବା ପୂର୍ବରୁ ତାଙ୍କର ଡାକ୍ତରଙ୍କୁ ପଚାରିବା ଉଚିତ । ଅନ୍ୟ ରୋଗୀମାନେ ସବୁବେଳେ ଖାଇସାରି ଏହି ବଟିକା ଖାଇବା ଦରକାର । ଏବେ ଗୋଟିଏ ପରୀକ୍ଷାରୁ ଜଣାପଡ଼ୁଛି ଯେ ଆସ୍‌ପିରିନ ଖାଇଲେ ଆଖିରେ ମୋତିଆବିନ୍ଦୁ ବା ଫରଳ ହୁଏନାହିଁ । ତେଣୁ ଆସ୍‌ପିରିନ ପ୍ରତି ଭୟ କରିବା ଉଚିତ ନୁହେଁ । ଦଶଦିନ ଏହିପରି ଖାଇବା ପରେ ଯଦି କଷ୍ଟ ନ କମେ, ତେବେ ବିଶେଷଜ୍ଞ ଡାକ୍ତରଙ୍କୁ ଦେଖାଇବା ଦରକାର ।

ମେରୁ ହାଡ଼ରେ ଯକ୍ଷ୍ମା କିମ୍ବା ପ୍ରୋଷ୍ଟେଟ୍ ଗ୍ରନ୍ଥିର କ୍ୟାନସର ବେଳେବେଳେ ମେରୁ ହାଡ଼କୁ ଖାଇଯାଏ ଏବଂ ବାର୍ଦ୍ଧକ୍ୟ ବୟସ ସମୟରେ ମେରୁ ହାଡ଼କୁ ପାପବ କରିଦିଏ । ଏହା ବ୍ୟତୀତ ଅନେକ ରୋଗ ଅଛି ଯେଉଁଥିରେ ମେରୁହାଡ଼ସବୁ ଖାଇଯାଇ ଯନ୍ତ୍ରଣା ହୁଏ । ବହୁ ସମୟରେ କୌଣସି ଜାଗାରେ ପଡ଼ିଯାଇଥିଲେ ମେରୁହାଡ଼ସବୁ ଭାଙ୍ଗିଯାଇ ଅସ୍ୱାଭାବିକ ଭାବରେ ଯୋଡ଼ି ହୋଇଥାଏ । ବିଶେଷଜ୍ଞ ଡାକ୍ତରମାନେ ମେରୁହାଡ଼ର ଏକ୍‌ସରେ କରି ରକ୍ତ, ପରିସ୍ରା, ପରୀକ୍ଷା କରି କିମ୍ବା ମେରୁଦଣ୍ଡ ମଝିରେ ରଙ୍ଗ ଦେଇ ଏକ୍‌ସରେ କରି ଏହାସବୁ ଜାଣିପାରନ୍ତି, ଫଳରେ ରୋଗକୁ ଶୀଘ୍ର ଚିକିତ୍ସା ଦିଆଯାଇଥାଏ ।

ଆପଣଙ୍କର ସବୁ ପରୀକ୍ଷାରୁ କୌଣସି ଦୋଷ ବାହାରି ନାହିଁ । ଏହାର ଅର୍ଥ ଏହି ଯେ ଉପାସ୍ଥିର କ୍ଷୟ ବହୁତ ଅଳ୍ପ । ସେଥିପାଇଁ ପରୀକ୍ଷାରେ କିଛି ଦୋଷ ବାହାରି ନାହିଁ । ମୋ ମତରେ ଏଥର ରୋଗ କମିଗଲା ପରେ ଆପଣ ଅଣ୍ଟା ମାଂସପେଶୀର ଶକ୍ତି ବୃଦ୍ଧି ପାଇଁ ଉପଯୁକ୍ତ ବ୍ୟାୟାମ କରନ୍ତୁ । କାମ କରିବା ସମୟରେ ଅଣ୍ଟା ମଜବୁତ ରଖିବା ପାଇଁ ଆପଣଙ୍କର ମାପରେ ସ୍ୱତନ୍ତ୍ର ଭାବରେ ତିଆରି ଏକ ବେଲ୍‌ଟ (ଲମ୍ବର ବେଲ୍‌ଟ) ପିନ୍ଧନ୍ତୁ । ଏହି ବେଲ୍‌ଟ କେବଳ ଡାକ୍ତରଙ୍କର ପରାମର୍ଶକ୍ରମେ ମିଳିଥାଏ । ଏହା ବ୍ୟତୀତ ଖରାବେଳେ ଏବଂ ରାତିରେ ଶୋଇଲାବେଳେ ବିନା ତକିଆରେ ଓ ବିନା ଶେଯରେ କାଠ ଖଟରେ ଶୋଇ ରହନ୍ତୁ । ଏହିଭଳି ଚାଲିଲେ ପରବର୍ତ୍ତୀ କାଳରେ ଆପଣଙ୍କର ଆଉ ଅଣ୍ଟା ଧରିବ ନାହିଁ ।

●

# ନାଳଶୂଳା ଝାଡ଼ା

**ପ୍ରଶ୍ନ**—ମୋର ଦୁଇଟି ପିଲା—ଗୋଟିଏ ପୁଅ, ଗୋଟିଏ ଝିଅ। ପୁଅର ବୟସ ୧୨ ବର୍ଷ। ଅର ୭ ବର୍ଷ। ମୁଁ ପରିବାର ନିୟନ୍ତ୍ରଣ ଅପରେସନ୍ ହୋଇ ସାରିଛି। ମୋର ସ୍ୱାମୀ ଜଣେ ସ୍ୱଳ୍ପ ବେତନଭୋଗୀ ସରକାରୀ କର୍ମଚାରୀ। ମୋର ପିଲାମାନଙ୍କୁ ମଝିରେ ମଝିରେ ଝାଡ଼ା, ବାନ୍ତି, ପେଟକାମୁଡ଼ା ଲାଗିରହୁଛି। ବଡ଼ ପିଲାଟା ସପ୍ତମ ଶ୍ରେଣୀରେ ପଢ଼ୁଛି। ରକ୍ତହୀନତା ଭୋଗକରୁଛି। ବୋକା ବୋକା, ପାଠ ମନେରହୁନାହିଁ। ଝିଅର ବାରମ୍ବାର ନାଳଶୂଳା ଝାଡ଼ା ହେଲାପରେ ମଳଦ୍ୱାରରେ ନାଲି-ହୋଇ ଚନ୍ଦ୍ର ଖସିପଡ଼ୁଛି। ମଝିରେ ମଝିରେ ଏଲୋପାଥି, କବିରାଜ, ହୋମିଓପାଥି ଔଷଧ ଦେଉଛି। ଔଷଧ ଖାଉଥିବାବେଳେ ସାମାନ୍ୟ କମିଯାଉଛି। ପୁଣି ଯେଉଁ କଥାକୁ ସେଇକଥା। ଗତ ଦୁଇମାସ ମଧ୍ୟରେ ଆମ ଜଣାଶୁଣାରେ ଓ ବନ୍ଧୁବାନ୍ଧବରେ ଛଅ ଜଣ ପିଲା ନାଳଶୂଳା ଝାଡ଼ାରେ ମରିଗଲେଣି। ଔଷଧ ତ ଦେଉଛି। ଡେଉଁରିଆ ବାନ୍ଧୁଛି। ଚଣ୍ଡିଙ୍କୁ ବୋଦା ଯାଚୁଛି। ତଥାପି ସବୁବେଳେ ଭୟରେ ରହୁଛି। ପିଲାଙ୍କ କଥା ଭାବି ରାତିରେ ନିଦ ବି ହେଉନାହିଁ। କ'ଣ କଲେ ଏଥିରୁ ମୁକ୍ତି ପାଇବୁ ଲେଖିବେ।

**ଉତ୍ତର**—ୟୁନିସେଫ୍‌ର ୧୯୮୫ ମସିହା ରିପୋର୍ଟ ଅନୁଯାୟୀ ଭାରତ, ବଙ୍ଗଳାଦେଶ ପ୍ରଭୃତି ଉନ୍ନତଶୀଳ ଦେଶଗୁଡ଼ିକରେ ଶିଶୁ ମୃତ୍ୟୁର ପ୍ରଧାନ କାରଣଗୁଡ଼ିକ ହେଲା—ଝାଡ଼ାବାନ୍ତି, ମିଳିମିଳା, ପୋଲିଓ ପ୍ରଭୃତି ସଂକ୍ରାମକ ରୋଗ ଓ ପୁଷ୍ଟିହୀନତା। ଆମ ଦେଶରେ ଲକ୍ଷ ଲକ୍ଷ ପିଲା ପ୍ରତିବର୍ଷ ଝାଡ଼ା ବାନ୍ତି ରୋଗରେ ପ୍ରାଣ ହରାନ୍ତି। ଏହାର ମୁଖ୍ୟ କାରଣ ଅଶିକ୍ଷା, ଗଭୀର ଅନ୍ଧବିଶ୍ୱାସ ଏବଂ ଆଧୁନିକ ବିଜ୍ଞାନର ସରଳ ନୀତିଗୁଡ଼ିକୁ ବ୍ୟବହାରିକ କାର୍ଯ୍ୟ କରିବାରେ ଅବିଶ୍ୱାସ।

ଝାଡ଼ାବାନ୍ତି ରୋଗରେ ଯେତେ ରୋଗୀ ମୃତ୍ୟୁମୁଖରେ ପଡ଼ନ୍ତି ତା'ର ମୂଳ କାରଣ ଦେହରେ ଜଳୀୟ ଅଂଶର ଅଭାବ। ଏହାକୁ ଡାକ୍ତରୀଭାଷାରେ କହନ୍ତି ଡିହାଇଡ୍ରେସନ୍ (Dehydration)। ଯେଉଁ

ରୋଗୀକୁ ଝାଡ଼ାବାନ୍ତି ହୁଏ, ତାକୁ ବେଶି ଶୋଷ ହୁଏ । ବହୁଲୋକ ଏଭଳି ରୋଗୀଙ୍କୁ ପାଣି ପିଇବାକୁ ଦିଅନ୍ତି ନାହିଁ । ସେମାନଙ୍କର ଧାରଣା ଯେଉଁ ପାଣି ପିଇବାକୁ ଦିଆଯାଉଛି ତାହା ବାନ୍ତିରେ ନଚେତ୍ ପାଣିଆ ଝାଡ଼ାରେ ବାହାରିଯାଉଛି । ତେଣୁ ପାଣି ପିଇବାକୁ ଦେଇ ଝାଡ଼ାବାନ୍ତି ଓ ଯନ୍ତ୍ରଣା ବଢ଼ାଇବା ଉଚିତ ନୁହେଁ । ଆମ ଶରୀରରେ ଶତକଡ଼ା ଅଠାନବେ ଭାଗ ପାଣି ଓ ଲବଣ । ଶରୀରରୁ ଜଳୀୟ ଅଂଶ ଓ ଲବଣ କ୍ଷୟ ହୋଇଗଲେ ମୃତ୍ୟୁ ସ୍ୱାଭାବିକ । ଭାରତ ଓ ବାଂଲାଦେଶରେ ହଇଜା, ଝାଡ଼ାବାନ୍ତି, ନାଲିଶୂଳା ଝାଡ଼ାରେ ଶିଶୁ ମୃତ୍ୟୁ ସବୁଠୁ ଅଧିକ । ଲକ୍ଷ ଲକ୍ଷ ଶିଶୁ ଏହି ଜଳୀୟ ଅଂଶ ଓ ଲବଣ ଅଭାବରୁ ମରୁଥିବାରୁ ୟୁନସେଫ୍ ପ୍ରଥମେ ବାଂଲାଦେଶରେ ଏକ ସ୍ୱତନ୍ତ୍ର ଭୁଟ୍‌କା ଔଷଧର ପ୍ରଚଳନ କଲେ । ରୋଗୀର ୨୪ ଘଣ୍ଟା ମଧ୍ୟରେ କେତେ ବାନ୍ତି ହେଉଛି ଗୋଟିଏ ବାଲ୍‌ଟିରେ ରଖିଲେ ଏବଂ କେତେ ପରିମାଣରେ କେତେଥର ଝାଡ଼ା ହେଉଛି ତା'ର ଆନୁମାନିକ ପରିମାଣ ଯଦି ଦୁଇ ଲିଟର ହେଲା, ତାହେଲେ ତାକୁ ଅଢ଼େଇ ଲିଟର ଏହି ଭୁଟ୍‌କା ଔଷଧ ପିଇବାକୁ ଦେବା ଉଚିତ । ଏହି ଔଷଧ ଝାଡ଼ାବାନ୍ତିର ପରିମାଣଠାରୁ ଅଧଲିଟର ଅଧିକା ହେବା ଦରକାର ।

ଏହି ଭୁଟ୍‌କା ଔଷଧ ଏକ ସ୍ୱତନ୍ତ୍ର ପାଣି । ଏକ ଲିଟର (୪ଗ୍ଲାସ) ସିଝା ଥଣ୍ଡା ପାଣିରେ ୨୦ ଗ୍ରାମ୍ (୪ ଚାମୁଚ) ଚିନି କମ୍ବା ଗ୍ଲୁକୋଜ, ୪ ଗ୍ରାମ (୧ ଚାମୁଚ) ଲୁଣ ପକାଇ ଏହା ତିଆରି କରାଯାଏ । ସୁବିଧା ମିଳିଲେ ସେଥିରେ ଅଧା ଚାମୁଚ ଖାଇବା ସୋଡ଼ା ମିଶାଯାଇପାରେ । ସୁଆଦ ଲାଗିବାପାଇଁ ଫାଳେ କାଗିଜିଲେମ୍ବୁ ଚିପୁଡ଼ିଲେ ଭଲ । ଝାଡ଼ାବାନ୍ତିର ପରିମାଣକୁ ଅପେକ୍ଷା ନ କରି ଗିଲାସେଗିଲାସେ ପ୍ରତି ୨୦ ମିନିଟ ବା ଅଧଘଣ୍ଟାରେ ପିଇବା ଉଚିତ ।

ଶରୀରରୁ ଜଳୀୟ ଅଂଶ କମିଗଲେ ଡାକ୍ତରଖାନାରେ ସାଧାରଣତଃ ସାଲାଇନ୍ ଇଞ୍ଜେକ୍‌ସନ୍ ଶିରାରେ ଦିଆଯାଇଥାଏ । କିନ୍ତୁ ସବୁଠାରେ ସବୁ ସମୟରେ ସାଲାଇନ୍ ଚଳାଇବା ଅତି ଧନୀ ଲୋକଙ୍କ ପାଖରେ ମଧ୍ୟ ସମ୍ଭବ ନୁହେଁ ।

ଘରେ ତିଆରି ହୋଇଥିବା ଏହି ସ୍ୱତନ୍ତ୍ର ପାଣି, ସାଲାଇନ୍ ଇଞ୍ଜେକ୍‌ସନ ସହିତ ସମାନ ବୋଲି ବହୁ ରୋଗୀଙ୍କ ଉପରେ ଗବେଷଣା ପରେ ଜଣାଯାଇଛି । ସହଜରେ ମିଳୁଛି ଏବଂ ଶସ୍ତା ବୋଲି ଏହାକୁ ହେୟଜ୍ଞାନ କରିବା ଆଦୌ ଉଚିତ ନୁହେଁ । ଝାଡ଼ାବାନ୍ତି ବନ୍ଦ ହେଲାପରେ ମଧ୍ୟ ୩।୪ ଦିନ ଏଭଳି ପାଣି ପିଇବା ଉଚିତ ।

ଦିନେ ଦୁଇଦିନ ମଧ୍ୟରେ ଏଭଳି ଝାଡ଼ା ନ କମିଲେ, ନିକଟସ୍ଥ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ ଝାଡ଼ାଟା ପରୀକ୍ଷା କରାଇନେବା ଉଚିତ । ଡାକ୍ତରମାନେ ଝାଡ଼ାକୁ ଅଣୁବୀକ୍ଷଣ ଯନ୍ତ୍ରରେ ପରୀକ୍ଷା କରିଥାନ୍ତି । ଏହି ପରୀକ୍ଷା ଦ୍ୱାରା ଝାଡ଼ାରେ ଜିଆ, ଦସିପୋକ, ଅଙ୍କୁଶ କୃମି, ଆମବାକ୍ ଡିସେଣ୍ଟ୍ରି ଏବଂ ବାସିଲାରି ଡିସେଣ୍ଟ୍ରିର ଜୀବାଣୁ ସହଜରେ ଜଣାପଡ଼ିଥାନ୍ତି । କୌଣସି ରୋଗର କାରଣ ଜଣା ନ ପଡ଼ି ଝାଡ଼ା ହେଉଥିଲେ ତାକୁ ଭୂତାଣୁଜନିତ ବୋଲି ବିଶ୍ୱାସ କରାଯାଇଥାଏ ।

ଛୋଟ ପିଲାମାନଙ୍କର ଝାଡ଼ା ସାଧାରଣତଃ କୃମିରୋଗ ଯୋଗୁଁ ହୋଇଥାଏ । କୃମିରୋଗରୁ ରକ୍ଷାପାଇବା ପାଇଁ କେତେକ ସାଧାରଣ ଉପାୟ ମାନି ଚଳିବା ଉଚିତ ।

ଖାଇବା ପୂର୍ବରୁ ଏବଂ ପାଇଖାନା ଯିବାପରେ ଭଲ ପାଣିରେ ସାବୁନରେ ହାତଧୋଇବା ଆବଶ୍ୟକ ।

ମୂଳା, କାକୁଡ଼ି, ପାଚିଲାକଦଳୀ ପ୍ରଭୃତି ଫଳ, କୋଳି ଖାଇବା ପୂର୍ବରୁ ଭଲକରି ଧୋଇ ଖାଇବା ଉଚିତ । ତଳୁ ଗୋଟାଇ ଖାଦ୍ୟ-ପଦାର୍ଥ ଖାଇବା ଉଚିତ ନୁହେଁ । ବାସି ମାଛିବସା ଅଣ୍ଡା ଖାଦ୍ୟ ଖାଇବା ଉଚିତ ନୁହେଁ । ତଳୁ ଗୋଟାଇ ଖେଳଣା କିମ୍ବା ଅନ୍ୟ ପଦାର୍ଥ ପାଟିରେ ପୂରାଇବା ଉଚିତ ନୁହେଁ । ବୋତଲ କ୍ଷୀର କିମ୍ବା ଚୁଚୁମା ଥରେ ଦେଲାପରେ ତାକୁ ପାଣିରେ ଫୁଟାଇ ଦ୍ୱିତୀୟ ଥର ବ୍ୟବହାର କରିବା ଆବଶ୍ୟକ । ଏଭଳି କଲେ ପେଟରେ ଚାକୁଣ୍ଡି ହୁଅନ୍ତି ନାହିଁ ।

ସଫାସୁତରା ପ୍ୟାଣ୍ଟ, ଚଡ଼ି, ଜଂଘିଆ ପିନ୍ଧିବା ଆବଶ୍ୟକ । ନଚେତ୍ ଦସିପୋକ ହୋଇ ମଳଦ୍ୱାର କୁଣ୍ଡାଇ ହୁଏ ।

ନଖ କାଟି ସଫା ରଖିବା ଉଚିତ ଏବଂ ସଫା ବିଛଣାରେ ଶୋଇବା ଆବଶ୍ୟକ; ନଚେତ୍ ଏହା ଦସିପୋକ ବଢ଼ିବାର କାରଣ ହୋଇଥାଏ ।

ଖାଲିପାଦରେ ଗୁହ ପଡ଼ିଆରେ ବୁଲିବା କିମ୍ବା ଝାଡ଼ାଯିବା ଉଚିତ ନୁହେଁ । ଅଙ୍କୁଶ କୃମି (Hook worm)ର ଲର୍ଭାମାନେ ଗୋଡ଼ ଚମ ଫଟାଇ ଅନ୍ତନଳୀରେ ପ୍ରବେଶ କରନ୍ତି ଏବଂ ରକ୍ତ ଶୋଷି ରକ୍ତ-ହୀନତା ସୃଷ୍ଟି କରନ୍ତି । ବରପାଲି ପାଇଖାନା କିମ୍ବା ଖନ୍ଦକ ଖୋଳି ପାଇଖାନା ତିଆରି କରିବା ଉଚିତ । ଏଭଳି କଲେ ଅଙ୍କୁଶ କୃମିଜନିତ ରକ୍ତହୀନତା ହୁଏ ନାହିଁ ।

ପ୍ରତିଦିନ ପାଣି ସିଝାଇ ଥଣ୍ଡାକରି ଛାଣି ପିଇବା ଉଚିତ । ଏଭଳି କଲେ ହଳଦିଆ କାମଳ, ନାଳଶୂଳ ଝାଡ଼ା, ବଦହଜମ ଝାଡ଼ା ହୁଏ-ନାହିଁ । ବଜାରରେ ପାଣି ଫିଲ୍‌ଟର ବିକ୍ରୀ କରାଯାଉଛି । ଭଲ ପାଣି ପିଇବା ପାଇଁ ଏହା ସବୁଠୁ ଶସ୍ତା ଓ ସୂକ୍ଷ୍ମ ଉପାୟ । ବଜାରର ଚାଟ, ଗୁପଚୁପ୍ ପେଟର ଝାଡ଼ାରୋଗ ଏବଂ ହଳଦିଆ କାମଳ କରାଇବାରେ ବେଶି ସାହାଯ୍ୟ କରିଥାଏ । କାରଣ ଏଠାରେ ବ୍ୟବହୃତ ହେଉଥିବା ପାଣି ସବୁଠୁ ଅପରିଷ୍କାର ଥାଏ । ପୁରୁଣା ଝାଡ଼ାରୋଗ ରୋକିବାରେ ଶୁଦ୍ଧ ଖାଦ୍ୟ, ପାନୀୟର ଉପଯୋଗିତା ବହୁତ ।

ଏଭଳି କେତେକ ସାଧାରଣ ରୋଗ ଛାଡ଼ିଦେଲେ ଅନ୍ତନଳୀର କାନସର, ଘା (Ulcerative Colitis), ଯକ୍ଷ୍ମା, ପୁରାତନ ନାଳଶୂଳ ଝାଡ଼ାର କାରଣ ହୋଇଥାନ୍ତି । ଡାକ୍ତରୀ ପରୀକ୍ଷାରେ ତାହା ଜଣାଯାଇଥାଏ ।

ପ୍ରତି ସୁସ୍ଥଲୋକ ବର୍ଷରେ ୨ ଥର ମାଗଣାରେ ପ୍ରାଥମିକ ସ୍ୱାସ୍ଥ୍ୟ-କେନ୍ଦ୍ରରେ ଝାଡ଼ା ପରୀକ୍ଷା କରାଇ ନେବା ଉଚିତ ଏବଂ କୃମି ଥିଲେ କୃମି ଔଷଧ ଖାଇଦେବା ଦରକାର ।

ଆଜିକାଲି ପାଇରେଣ୍ଟଲ ନାମରେ ଗୋଟିଏ ଔଷଧ ବାହାରିଛି । ୧୧ ବର୍ଷ ପର୍ଯ୍ୟନ୍ତ ପିଲା ଗୋଟିଏ ଏବଂ ବଡ଼ ମଣିଷ ଏକ ସମୟରେ ୩ଟି ବଟିକା ଖାଇଦେଲେ ପେଟରେ ଥିବା ସବୁ ସାଧାରଣ କୃମି ମରି ଯାଆନ୍ତି । ବିଭିନ୍ନ କମ୍ପାନୀ ବିଭିନ୍ନ ନାମରେ ଏହି ବଟିକା ବିକିଥାନ୍ତି । ଏଭଳି ନିର୍ଦ୍ଦିଷ୍ଟ ସମୟରେ ପିଲାମାନଙ୍କୁ ଚଳାଇଲେ ଆଦୌ ଝାଡ଼ାରୋଗ ହେବନାହିଁ । ଝାଡ଼ା ବନ୍ଦ ହେଲେ ପଦ୍ମ ଖସିବା ଠିକ୍ ହୋଇଯିବ ।

# ହଳଦିଆ କାମଳ

**ପ୍ରଶ୍ନ**—ମୋର ବୟସ ୪୦ ବର୍ଷ । ଆପାତତଃ ଭଲ ସ୍ୱାସ୍ଥ୍ୟ ଥିଲା । ମୁଁ ବ୍ୟବସାୟ ସମ୍ପର୍କରେ ଦୁଇମାସ ତଳେ କଲିକତା ଯାଇଥିଲି । ସେଠାରୁ ଫେରିବାର ୧୫ ଦିନ ପରେ ମୋତେ ସାମାନ୍ୟ ଜ୍ୱର ହେଲା । ଜ୍ୱର ୩ ଦିନ ରହି ଛାଡ଼ିଗଲା । ଖୁବ୍ ଦୁର୍ବଳ ଲାଗିଲା । ଭୋକ ହେଲାନାହିଁ । ଯାହା ଖାଇଲେ ଖାଲି ବାନ୍ତି ହେଲା । ପରିସ୍ରା ହଳଦିଆ ହେଲା । ଡାକ୍ତରଙ୍କୁ ଦେଖାଇଲାରୁ ସେ ଆଖି ହଳଦିଆ ପଡ଼ୁଛି ଏବଂ ଲିଭର ବଢ଼ିଛି ବୋଲି କହି 'ଭାଇରାଲ ହେପାଟାଇଟିସ୍' ଏବଂ ଜଣ୍ଡିସ୍ ହୋଇଛି ବୋଲି କହିଲେ । କେତେକ ଔଷଧ ଲେଖିଦେଲେ । ଦୁଇ ସପ୍ତାହ ଖାଇଲାପରେ ବିଶେଷ କିଛି ଫଳ ହେଲାନାହିଁ । ଘର ଲୋକ ଏଲୋପାଥି ଔଷଧ ବନ୍ଦକରି ହଳଦିଆ କାମଳ ଛଡ଼ାଇବାପାଇଁ ଗୁଣିଆ ଡାକିଲେ । ସେ ସୋରିଷ ତେଲ ସାହାଯ୍ୟରେ କେତେକ ମନ୍ତ୍ର ବୋଲି ଝାଡ଼ିଦେଲେ ଏବଂ ତେଉଁରିଆ ଦେଲେ । ସେଥିରେ ମଧ୍ୟ କିଛି ହେଲାନାହିଁ । ହୋମିଓପାଥି ଔଷଧ ଚାରିଦିନ ଖାଇ ମଧ୍ୟ ବିଶେଷ କିଛି ଫଳ ହେଲା ନାହିଁ । ଏହା ଭିତରେ ମୋର ୬୦ କେ. ଜି. ଓଜନ ୪୫ କେ. ଜି. ହୋଇଗଲାଣି । ଆଖି ହଳଦିଆ ଏବଂ ପରିସ୍ରା ହଳଦିଆ ଲାଗିରହିଛି । ଡାହାଣ ପଟ ପେଟ ବେଶ୍ ଦରଜ ଅଛି । ଦେହ କୁଣ୍ଡାଇ ହେଉଛି । ରାତିରେ ନିଦ ହେଉନାହିଁ । ବହୁଲୋକ ହଳଦିଆ କାମଳରେ ମଲେଣି ବୋଲି ଖବର ପଢ଼ି ବେଶ୍ ଆତଙ୍କିତ । କଣ କରିବି ? ମୁଁ କ'ଣ ଭଲ ହେବିନାହିଁ । ସବୁଠୁ ଭଲ ବ୍ୟବସ୍ଥା କରିବେ । ମୁଁ ଡାକ୍ତରଖାନାରେ ଭର୍ତ୍ତି ହେବାପାଇଁ ଭାବୁଛି ।

**ଉତ୍ତର**—ଆଧୁନିକ ଡାକ୍ତରୀ ଶାସ୍ତ୍ରରେ ଭାଇରାଲ ହେପାଟାଇଟିସ୍ (viral hepatitis) ଏବଂ ଜଣ୍ଡିସ (jaundice) ଅଲଗା ଅର୍ଥ ବୁଝାଏ । ହଳଦିଆ କାମଳ ବା ଜଣ୍ଡିସ୍ ଗୋଟିଏ ରୋଗ ନୁହେଁ, ଏହା ଏକ ଲକ୍ଷଣ ମାତ୍ର । ବହୁ ପ୍ରକାର ରୋଗରେ ଜଣ୍ଡିସ୍ ହୋଇଥାଏ । ଜଣ୍ଡିସ୍‌କୁ ଡାକ୍ତରୀ

ଭାଷାରେ କହନ୍ତି ଇକ୍‌ଟେରସ୍ (Icterus) । ଆଖିର ଶ୍ୱେତପଟଳ, ଚର୍ମ, ଜିଭତଳ, ନଖତଳ ହଳଦିଆ ପଡ଼ିଲେ ଜଣ୍ଡିସ୍ ହୋଇଛି ବୋଲି କୁହାଯାଏ ।

ଆମ ରକ୍ତରେ ଲୋହିତ ରକ୍ତକଣିକା ଅଛନ୍ତି, ଏକ ମିଲିଲିଟର ରକ୍ତରେ ପାଞ୍ଚ ନିୟୁତ । ପ୍ରତି ଲୋହିତ ରକ୍ତ କଣିକା ୧୨୦ ଦିନ ବଞ୍ଚନ୍ତି । ମଲାପରେ ପ୍ରତି ଲୋହିତ ରକ୍ତ କଣିକାରୁ ଏକ ହଳଦିଆ ରଙ୍ଗ ବାହାରେ । ତାର ନାମ ବିଲିରୁବିନ୍ । ଶରୀରରେ ସବୁବେଳେ ବିଲିରୁବିନ୍ ବାହାରୁଥାଏ ଏବଂ ଲିଭର ଏଗୁଡ଼ିକ ହଜମକରି ପିତ୍ତ ସାହାଯ୍ୟରେ ଅନ୍ତନଳୀକୁ ପଠାଇଦିଏ । ପରେ ଏଗୁଡ଼ିକ ଝାଡ଼ା ପରିସ୍ରାରେ ବାହାରି ଯାଆନ୍ତି । ଝାଡ଼ାର ବାଦାମି ରଙ୍ଗ ହୁଏ ଏଥିପାଇଁ । ଜଣେ ସୁସ୍ଥ ଲୋକର ୧୦୦ ସି.ସି. ରକ୍ତରେ ବିଲିରୁବିନ୍ ସବୁବେଳେ ଅଧା ମିଲିଗ୍ରାମରୁ ଏକ ମିଲିଗ୍ରାମ ପର୍ଯ୍ୟନ୍ତ ଥାଏ । କିନ୍ତୁ ୧୦୦ ସି.ସି. ରକ୍ତରେ ଏହାର ମାତ୍ରା ୨ ମିଲିଗ୍ରାମରୁ ବେଶୀ ହେଲେ ଆଖି ହଳଦିଆ ହୋଇଯାଏ । ସେତେ-ବେଳେ ହଳଦିଆ କାମଳ ବା ଜଣ୍ଡିସ୍ ହୋଇଛି ବୋଲି କୁହାଯାଏ । ହଳଦିଆ କାମଳ ବା ଜଣ୍ଡିସ୍ ସାଧାରଣତଃ ନିମ୍ନଲିଖିତ କାରଣରୁ ହୋଇଥାଏ । ପ୍ରଥମରେ ବେଶି ଲୋହିତ ରକ୍ତ କଣିକା ମରିଗଲେ ବହୁତ ବିଲିରୁବିନ୍ ବାହାରେ । ଲିଭର କୋଷ ଭଲ ଥିଲେ ମଧ୍ୟ ସବୁ ବିଲିରୁବିନ୍‌କୁ ଭାଙ୍ଗି ପିତ୍ତକୋଷକୁ ପଠାଇ ପାରେ ନାହିଁ । ଫଳରେ ରକ୍ତରେ ବିଲିରୁବିନ୍ ବଢ଼ି ଜଣ୍ଡିସ ହୋଇଥାଏ । ଏ ରୋଗଗୁଡ଼ିକ ଆମର ପଶ୍ଚିମ ଓଡ଼ିଶାରେ ବେଶି ଦେଖାଯାଏ । ଏହାକୁ ସିକଲ୍ ସେଲ ଆନିମିଆ କହନ୍ତି । ଏଥିରେ ଲୋହିତ ରକ୍ତ କଣିକା, ଦାଆ (Sickle) ଭଳି ହୋଇ ଶୀଘ୍ର ମରିଯାନ୍ତି । ଏହାକୁ ହିମୋଲିଟିକ ଜଣ୍ଡିସ କୁହାଯାଏ । ହିମୋଲିସିସର ଅର୍ଥ ଲୋହିତ ରକ୍ତ କଣିକାର ଅକାଳ ମୃତ୍ୟୁ । ଏଭଳି ପ୍ରାୟ ପଚିଶ ପ୍ରକାର ରୋଗ ଅଛି ।

ଦ୍ୱିତୀୟ ପ୍ରକାର କାମଳ ବା ଜଣ୍ଡିସ ଲିଭର କୋଷଗୁଡ଼ିକ ରୁଗ୍ଣ ହେଲେ ହୋଇଥାଏ । ଲିଭରକୁ ଲାଟିନ୍ ଭାଷାରେ କହନ୍ତି ହେପାର (Hepar) । ତେଣୁ ଜୀବାଣୁ ବା ଭୂତାଣୁ ସଂକ୍ରମିତ ରୁଗ୍ଣ ଲିଭରକୁ ଡାକ୍ତରୀ ଭାଷାରେ ହେପାଟାଇଟିସ୍ (Hepatitis) କୁହାଯାଏ ।

ଲିଭର ବା ଯକୃତ୍ ଶରୀର ଭିତରେ ସର୍ବବୃହତ୍ତ ଅଂଶ । ଏହାର ଓଜନ ଦେଡ଼ କେ.ଜି. । ଏହା ପେଟରେ ଡାହାଣପଟରେ ପିଞ୍ଜରା ତଳେ ଥାଏ । ଏକ ସମୟରେ ଏହା ୫୦୦ ପ୍ରକାର କାମ କରୁଥାଏ । ସେତିକି କାମ କରିବାକୁ ଏକ ରାସାୟନିକ କାରଖାନା ବସାଇଲେ ଏକର ଏକର ଜମି ଦରକାର ହେବ । ତେଣୁ ଯକୃତକୋଷ ଭାଇରସ୍ ପ୍ରଭାବରେ ରୁଗ୍‌ଣ ହେଲେ ଦୈନିକ ଉତ୍ପାଦିତ ବିଲିରୁବିନ୍‌କୁ ଠିକ୍ ଭାବରେ ଆୟତ୍ତ କରି ବ୍ୟବହାରରେ ଲଗାଇ ପାରେ ନାହିଁ । ଫଳରେ ରକ୍ତରେ ବିଲିରୁବିନ୍ ବୃଦ୍ଧି ପାଇ କାମଳ ହୁଏ । ଏହି ରୋଗ ହଳଦିଆ କାମଳର ପ୍ରଧାନ କାରଣ । ଏହାକୁ ଡାକ୍ତରୀ ଭାଷାରେ ଭାଇରାଲ୍ ହେପାଟାଇଟିସ୍ କୁହାଯାଏ । ତେଣୁ ଜଣ୍ଡିସ୍‌ର ଅନେକ କାରଣ ମଧ୍ୟରୁ ଭାଇରାଲ୍ ହେପାଟାଇଟିସ୍ ଗୋଟିଏ ।

ଆଉ ଏକ ପ୍ରକାର କାରଣ ଯୋଗୁ ମଧ୍ୟ କାମଳ ହୋଇଥାଏ । ଯକୃତରୁ ସାଧାରଣତଃ ପିତ୍ତ ପିତ୍ତନଳୀଦେଇ ଅନ୍ତନଳୀକୁ ଯାଆନ୍ତି । କିନ୍ତୁ କୌଣସି କାରଣରୁ ପିତ୍ତକୋଷ ପିତ୍ତନଳୀରେ ପଥର କମ୍ବା କାନସର ଇତ୍ୟାଦି ହେଲେ ଏହି ପିତ୍ତନଳୀ ରୁଦ୍ଧ ହୋଇଯାଏ । ଏହାକୁ ଡାକ୍ତରୀ ଭାଷାରେ ଅବ୍‌ଷ୍ଟ୍ରକ୍‌ଟିଭ୍ ଜଣ୍ଡିସ୍ **(Obstructive jaundice)** କୁହନ୍ତି । ଏଗୁଡ଼ିକ ସାଧାରଣତଃ ଅସ୍ତ୍ରୋପଚାରରେ ଭଲ ହୁଅନ୍ତି । ଅସ୍ତ୍ରୋପଚାର ସାହାଯ୍ୟରେ ବନ୍ଦ ବାଟ ଖୋଲି ଦିଆଯାଏ ।

ଯେଉଁ ହଳଦିଆ କାମଳ ଉଆଁ ରୋଗ ତାହା ମୁଖ୍ୟତଃ ଭାଇରାଲ ହେପାଟାଇଟିସ । ଏହି ଭାଇରସ ଦୁଇ ପ୍ରକାରର—ଭାଇରସ-ଏ, ଭାଇରସ-ବି । କଲିକତାରେ ବର୍ତ୍ତମାନ ଭାଇରସ୍-ଏ ରୋଗ ହଙ୍ଗାମକ ମହାମାରୀ ରୂପ ଧାରଣ କରିଛି । ଭାଇରସ୍-ଏ ଖାଦ୍ୟ ଓ ପାନୀୟ ମାଧ୍ୟମରେ ଶରୀରରେ ପ୍ରବେଶ କରେ । ରୋଗୀର ଝାଡ଼ା ପରିସ୍ରାରେ ଏଗୁଡ଼ିକ ନିଷ୍କ୍ରାନ୍ତ ହୋଇ ଜଳକୁ ଦୂଷିତ କରିଥାନ୍ତି । ସେଭଳି ଜଳ ଖାଦ୍ୟ-ପାନୀୟରେ ବ୍ୟବହୃତ ହେଲେ ହେପାଟାଇଟିସ୍ ହୋଇଥାଏ ।

ଏ ଭାଇରସ୍‌କୁ ମାରିବାପାଇଁ ଭଲ ଔଷଧ ନାହିଁ । କିନ୍ତୁ ଆନୁଷଙ୍ଗିକ ଲକ୍ଷଣ, ଜ୍ୱର, ମୂଣ୍ଡବିନ୍ଧା, ବାନ୍ତି, ପେଟମରା, କୋଷ୍ଠବଦ୍ଧ,

ରୋଗ ଲାଗିବାକୁ ଶଙ୍କା ରହିଥାଏ । ଖୁବ୍ ବେଶିରେ ଏ ରୋଗ ଦେଢ଼ମାସ ରହେ ଏବଂ ଶହେରେ ଅଠାନବେ ଲୋକ ଆପେ ଆପେ ଭଲ ହୋଇଯାଆନ୍ତି । ଏ ରୋଗରେ ଆଣ୍ଟିବାଓଟିକ ଖାଇବା ଉଚିତ ନୁହେଁ । ଭିଟାମିନ-ବି, ଭିଟାମିନ-ସି, ଓ ଗ୍ଲୁକୋଜ ଖାଇଲେ ଉପକାର ମିଳିଥାଏ । ଭାଇରସ-ବି ଅପେକ୍ଷାକୃତ ସାଂଘାତିକ । ପୃଥିବୀରେ ୨୦୦ ନିୟୁତ ଲୋକ ଏ ରୋଗ ଭୋଗ କରୁଛନ୍ତି । ସେଥିରୁ ୨୧ ନିୟୁତ କେବଳ ଭାରତରେ ଅଛନ୍ତି । ଦେହରେ ରୁଗ୍ଣ ଲୋକଠାରୁ (Blood transfusion) ରକ୍ତ ନେଲେ, ଛୁଞ୍ଚି ବିଶୋଧନ ନକରି ଇଞ୍ଜେକ୍ସନ୍ ନେଲେ କିମ୍ବା ସେଭଳି ରୋଗୀଙ୍କ ସହିତ ସହବାସ କଲେ ହେପାଟାଇଟିସ ସଂକ୍ରମିତ ହୋଇଥାଏ । ଏ ରୋଗ ବହୁଦିନ ଲାଗି ରହିଲେ ଲିଭର ସିରୋସିସ, ଲିଭର କାନସର୍ ହୋଇପାରେ ।

ଭାଇରସ-ଏ ଶରୀରରେ ୧୪ ଦିନରୁ ୪୦ ଦିନ ରହିଲା ପରେ ରୋଗ କରିଥାଏ । ରୋଗ କେତେ ଦିନ ରହିବ, ସାଧାରଣତଃ ଯକୃତ କୋଷ କେତେ ନଷ୍ଟ ହୋଇଛନ୍ତି ତାହା ଉପରେ ନିର୍ଭର କରେ । ଅଧାରୁ ବେଶି କୋଷ ନଷ୍ଟ ହେଲେ ରୋଗ ମୁଖ୍ୟତଃ ମାସେ, ଦେଢ଼ମାସ ଲାଗି ରହିଥାଏ । ଶରୀରର ରୋଗ ନିବାରଣୀ ଶକ୍ତି ଏହାକୁ ଆୟତ୍ତ କରନ୍ତି । ଭାଇରସ-ବି ରୋଗ ସୃଷ୍ଟି କରିବାପୂର୍ବରୁ ଶରୀରରେ ୩ ମାସ ପର୍ଯ୍ୟନ୍ତ ରହିପାରନ୍ତି ।

## ଥରେ ରୋଗ ହେଲେ

* ଡାକ୍ତରଙ୍କ ପାଖରେ ରକ୍ତ ଏବଂ ପରିସ୍ରା ପରୀକ୍ଷା କରିବା ଆବଶ୍ୟକ । ତାହେଲେ କେଉଁ କାରଣରୁ କାମଳ ହୋଇଛି ଜଣା ପଡ଼ିବ ।

* ଫୁଟାପାଣି ଥଣ୍ଡାକରି ପିଇବା ଉଚିତ ।

* ସହରରେ ଯୋଗାଉଥିବା ପାଣିରେ ଦିନରେ ଦୁଇଥର କ୍ଲୋରିନ୍ ମିଶାଇବା ଉଚିତ, ଯେପରି ଏକ ଲିଟର ପାଣିରେ ଅଧାମିଲିଗ୍ରାମ୍ କ୍ଲୋରିନ୍ ରହେ ।

* ଘିଅ, ଘୋଳଦହି, ପିଠା ପଣା, ତରକାରି, ଆଖୁରସ, ଫଳ, ପାଇଡ଼ ପାଣି ପିଇବା ମଧ୍ୟ ଭଲ । ଲୁଣ ବନ୍ଦ କରିବା ଉଚିତ ନୁହେଁ । ସ୍ୱାଦୁ ନିମିତ୍ତ ଅଳ୍ପ ତେଲ ମସଲା ବ୍ୟବହାର କଲେ କ୍ଷତି ନାହିଁ । ହଜମ ଭଲ ହେଉନଥିଲେ ତେଲ ମସଲା ଛାଡ଼ିଦେବା ଭଲ ।

* ଅପରିଷ୍କାର କୂଅ ପୋଖରୀର ପାଣି ପିଇବା, ବ୍ୟବହାର କରିବା, ଶୌଚ ହେବା ମଧ୍ୟ ନିଷିଦ୍ଧ । ଏହା ରୋଗ ବ୍ୟାପିବାରେ ସାହାଯ୍ୟ କରିଥାଏ । ଏଭଳି କି ଧୋଆ ହୋଇନଥିବା ମାଠିଆ ପାଣି ମଧ୍ୟ ପିଇବା ଉଚିତ ନୁହେଁ ।

## ରୋଗ ବ୍ୟାପୁଥିବା ସମୟରେ

* ବଜାରରେ ବିକି ହେଉଥିବା କଟାଫଳ, ଗୁପ୍‌ଚୁପ୍, ଚୁପ୍‌ଟି, ଦହି, ଥଣ୍ଡାପାଣି ପିଇବା ଭଲ ନୁହେଁ । ବାସି ମାଛିବସା ଖାଦ୍ୟ ଖାଇବା ଆଦୌ ଉଚିତ ନୁହେଁ । ମଞ୍ଜୁଆତି ଚେର ଘୋରି ଖାଇବା କିମ୍ବା ମିଶ୍ରି ପାଣି ପିଇବା ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ । ତେଣୁ ଚେର ଖୋଜିବା ଅନାବଶ୍ୟକ ।

* ଯେଉଁମାନେ ଶରୀରରେ ରକ୍ତ (Blood Transfusion) ନେବେ ସେମାନେ କଣ ରକ୍ତରେ ଭାଇରସ୍-ବି ଅଛି କି ନାହିଁ ପରୀକ୍ଷା କରିନେବା ଉଚିତ । ତେଣୁ କେବେ ଏହି ରୋଗ ଭୋଗିନଥିବା ଆତ୍ମୀୟ ଲୋକଙ୍କଠାରୁ ରକ୍ତନେବା ଭଲ ।

* ଝାଡ଼ା ଫୁଙ୍କା, ଓଷଧିଆରେ ବିଶେଷ କିଛି ଲାଭ ନାହିଁ । କାରଣ ବିନା ଚିକିତ୍ସାରେ ମଧ୍ୟ ଶତକଡ଼ାରେ ଅଠାନବେ ଲୋକ ଦେଢ଼ମାସ ମଧ୍ୟରେ ଭଲ ହୁଅନ୍ତି । ରୋଗ ସମୟରେ କଠିନ ଶାରୀରିକ କିମ୍ବା ମାନସିକ ପରିଶ୍ରମ କରିବା ଉଚିତ ନୁହେଁ । ବିଶ୍ରାମ ସର୍ବାଦୌ ଆବଶ୍ୟକ ।

ଅତି ଅଳ୍ପ ଲୋକ ଏ ରୋଗରେ ମରନ୍ତି । ସେମାନେ ପ୍ରଥମ ଦୁଇ ସପ୍ତାହରେ ଅଚେତ ହୋଇହିଁ ମରିଥାନ୍ତି । ତେଣୁ ଆପଣ ଉପସ୍ଥିତ

ଟିହେବା ଉଚିତ ନୁହେଁ । ଦେଢ଼ମାସରୁ ବେଶି ରୋଗ ରହିଲେ ଏହାକୁ ଡାକ୍ତରମାନେ କ୍ରନିକ ହେପାଟାଇଟିସ୍ କୁହନ୍ତି । ଏଭଳି ହେଲେ ଗୋଟିଏ ଇଞ୍ଜେକ୍ସନ ସାହାଯ୍ୟରେ ଯକୃତରୁ ମାଂସ ନେଇ ପରୀକ୍ଷା କରାଯାଇଥାଏ ଏବଂ ଆନୁଷଙ୍ଗିକ ଚିକିତ୍ସା କରାଯାଏ । ମୂଳତଃ ଉତ୍କଣ୍ଠିତ ନ ହୋଇ କୁସଂସ୍କାର, ଅନ୍ଧବିଶ୍ୱାସ, ଅଶିକ୍ଷାର ବଶବର୍ତ୍ତୀ ନ ହୋଇ ଆଧୁନିକ ଚିକିତ୍ସାରେ ଥରେ ପରୀକ୍ଷା କରି ଦେଢ଼ମାସ ଅପେକ୍ଷା କରିବା ଉଚିତ । ସୁସ୍ଥ ଲୋକଙ୍କ ପାଇଁ ହେପାଟାଇଟସ୍ ଭାଇରସ୍ ଟିକା ମଧ୍ୟ ବାହାରିଲାଣି । ଭାରତରେ ଏହା ମିଳୁନାହିଁ । ଭାରତରେ ଏହା ତିଆରି କରିବାପାଇଁ ଜନମତ ସୃଷ୍ଟି ହେବା ଆବଶ୍ୟକ ।



---

ଭଗବାନ ଆଉ ଭକ୍ତଙ୍କ ସମ୍ପର୍କ ଚୁମ୍ବକ ଓ ଲୁହା ପରି । ତେବେ ସେ ସବୁ ମଣିଷଙ୍କୁ ଆକର୍ଷଣ କରନ୍ତି ନାହିଁ କାହିଁକି ? ଲୁହା ଖଣ୍ଡିଏ କାଦୁଅ ଭିତରେ ପଡ଼ିଥିଲେ ଚୁମ୍ବକ ତାକୁ ଟାଣେ ନାହିଁ । କିନ୍ତୁ କାଦୁଅ ଧୋଇଦେଲେ ସହଜରେ ଟାଣିନିଏ । ମାୟାର ଆବରଣ ତଳେ ରହି ମଣିଷ ଭଗବାନଙ୍କ ଆକର୍ଷଣ ବୁଝିପାରେ ନାହିଁ । ପ୍ରାର୍ଥନା ଆଉ ଅନୁତାପର ଲୁହରେ ମନର ମଳ ଧୋଇଗଲେ ଆତ୍ମା ପରମାତ୍ମାଙ୍କ ଆଡ଼କୁ ଧାଇଁଯାଏ ।

—ଶ୍ରୀରାମକୃଷ୍ଣ ପରମହଂସ

---

## ଚିକିତ୍ସା ଜଗତରେ ଗୁରୁତ୍ୱପୂର୍ଣ୍ଣ ସୃଷ୍ଟିକାରୀ ଔଷଧ

# ସାଇକ୍ଲୋସ୍ପୋରିନ୍

୧୯୮୪ ମସିହା ଫେବ୍ରୁୟାରୀ ୨୧ ତାରିଖ । ରାତି ୨ଟା । ବିଶ୍ୱ ପ୍ରସିଦ୍ଧ ହୃଦ୍‌ଶଲ୍ୟ ଚିକିତ୍ସକ ଡକ୍ଟର ଡିବେକ ଏଇ ଗବେଷଣା ଲବ୍‌ଧ ତଥ୍ୟର ବିଶ୍ଳେଷଣ କରୁଥାନ୍ତି । ଟେଲିଫୋନ ବାଜି ଉଠିଲା କିଂ କିଂ କିଂ । ବିରକ୍ତିରେ ଫୋନ ଉଠାଇଲେ ଡକ୍ଟର ଡିବେକ ।

"ମାଇକେଲ୍ ଡିବେକ କହୁଛି ।"

କଣ ଖବର !

ଆର ପଟରୁ ଶୁଣାଗଲା ମୁଁ ମେଥଡିଷ୍ଟ ହସ୍‌ପିଟାଲର ସୁପରିଣ୍ଟେଣ୍ଡେଣ୍ଟ କହୁଛି । ଆମ ହସ୍‌ପିଟାଲରେ ଆଜି ଜଣେ ଦୁର୍ଘଟଣାଗ୍ରସ୍ତ ମୃତ ଯୁବକଙ୍କର ଭଲ ହୃତ୍‌ପିଣ୍ଡଟିଏ ଅଛି । ଆପଣଙ୍କର ଆବଶ୍ୟକ ଅଛି କି ? ମାଇକେଲ ଡିବେକ ଉଲ୍ଲସିତ ହୋଇ କହିଲେ, "ପ୍ରସ୍ତୁତ କରୁଥାନ୍ତୁ । ମୁଁ ଅଧଘଣ୍ଟାଏ ମଧ୍ୟରେ ପହଞ୍ଚୁଛି ।"

୧୯୬୭ ମସିହାରେ ଦକ୍ଷିଣ ଆଫ୍ରିକାର ଅଗ୍ରଗାମୀ ହୃଦ୍‌ଶଲ୍ୟ ଚିକିତ୍ସକ ଡକ୍ଟର କ୍ରିଷ୍ଟିଆନ ବର୍ଣ୍ଣାର୍ଡ଼ ପ୍ରଥମ ହୃଦରୋପଣ ଅସ୍ତ୍ରୋପଚାର କଲାପରେ ମାଇକେଲ ଡିବେକ ଯୁକ୍ତରାଷ୍ଟ୍ର ଆମେରିକାରେ ବହୁଳ ହୃଦରୋପଣ ଅସ୍ତ୍ରୋପଚାର କରିଛନ୍ତି ।

ଟେକ୍‌ସାସର ହ୍ୟୁଷ୍ଟନ ବିଶ୍ୱବିଦ୍ୟାଳୟର ସେ ହୃଦ୍‌ଶଲ୍ୟ ଚିକିତ୍ସା ବିଭାଗର ମୁଖ୍ୟ । ଅତିକ୍ରାନ୍ତ ବୟସ । ୧୯୬୭ରୁ ୧୯୭୦ ଭିତରେ ସେ ବହୁ ହୃଦ୍‌ରୋପଣ ଅସ୍ତ୍ରୋପଚାର କରିଥିଲେ । କିନ୍ତୁ ୧୯୭୧ରୁ ୧୯୮୪ ମସିହା ପର୍ଯ୍ୟନ୍ତ ସେ ଏଭଳି ଅସ୍ତ୍ରୋପଚାର ପୂରାପୂରି ବନ୍ଦ କରି ଦେଇଥିଲେ । ଡେଣ୍ଟନ କୁଲି, ନରମାନ୍ ଶମଓ୍ୱେ ପ୍ରଭୃତି ବିଶିଷ୍ଟ ହୃଦ୍‌ଶଲ୍ୟ ବିଶେଷଜ୍ଞମାନେ ହଜାର ହଜାର ସଂଖ୍ୟାରେ ଏଭଳି ଅସ୍ତ୍ରୋପଚାର କରୁଥିବାବେଳେ ମାଇକେଲ ଡିବେକ ଏଭଳି ହୃଦ୍‌ରୋପଣ ଅସ୍ତ୍ରୋପଚାରରୁ

ସମ୍ପୂର୍ଣ୍ଣ ନିବୃତ୍ତ ଥିଲେ । ତାଙ୍କ ମତରେ ହୃଦ୍‌ରୋପଣ ଅସ୍ତ୍ରୋପଚାର ପରେ ଯେଉଁ ଫଳ ମିଳୁଛି ଏବଂ ଏଥିରେ ଯେତେ ଖର୍ଚ୍ଚ ହେଉଛି ଏବଂ ରୋଗୀକୁ ଯେତେ ଯନ୍ତ୍ରଣା ଭୋଗ କରିବାକୁ ପଡ଼ୁଛି; ତାହା ଏହି ଅସ୍ତ୍ରୋପଚାର କରିବାକୁ ସାହସ ଦେଉନାହିଁ । କାରଣ ଏଭଳି ହୃଦରୋପଣ ପରେ ବର୍ଷକ ମଧ୍ୟରେ ପ୍ରାୟ ଶତକଡ଼ା ଅଶୀଭାଗ ରୋଗୀ ମୃତ୍ୟୁ ମୁଖରେ ପଡ଼ୁଥିଲେ ଏବଂ ଅବଶିଷ୍ଟ ୨୦ ଭାଗ ଦ୍ୱିତୀୟ ବର୍ଷରେ ଇହଲୀଳା ସମ୍ବରଣ କରୁଥିଲେ । କିନ୍ତୁ ଚଉଦବର୍ଷ ପରେ ପୁଣି ସେ ଏଭଳି ଅସ୍ତ୍ରୋପଚାର କରିବାକୁ ଆଗଭର ହେଲେ କାହିଁକି ?

କାରଣ ଏହା ମଧ୍ୟରେ ଗୋଟିଏ ନୂତନ ଔଷଧ ପ୍ରକୃତି କୋଳରୁ ଆବିଷ୍କୃତ ହୋଇ ପାରିଥିବାରୁ । ସେହି ଔଷଧର ପ୍ରଭାବରେ ଅଙ୍ଗରୋପଣ ଏକ ନିତିଦିନିଆ ଅସ୍ତ୍ରୋପଚାରରେ ପରିଣତ ହୋଇଛି । ଏହି ଔଷଧଟିର ନାମ "ସାଇକ୍ଲୋସ୍ପୋରିନ୍" । ଏହି ଔଷଧର ଆବିଷ୍କାର ଯୋଗୁ ସେଦିନ ରବିବାର ଚତୁର୍ଥ ପ୍ରହରରେ ମାଇକେଲ୍ ଡବେକ ଫ୍ଲୋରିଡାର ଚେପ୍ୱାଳିଶ ବର୍ଷ ବୟସ୍କ ଏକ ବ୍ୟକ୍ତିଙ୍କ ବକ୍ଷରେ ତାଙ୍କର ଅଚଳ ହୃତ୍‌ପିଣ୍ଡକୁ ବାହାର କରି ଏହି ଦୁର୍ଘଟଣାବିପନ୍ନ ମୃତ ଯୁବକର ହୃତ୍‌ପିଣ୍ଡକୁ ନେଇ ଯୋଡ଼ି-ଦେଇଥିଲେ । ଫଳରେ ଏକ ମହାନ୍ ଜୀବନର ରକ୍ଷା ହେଲା ।

ଅଙ୍ଗରୋପଣ ଅସ୍ତ୍ରୋପଚାର ପାଇଁ ସାଇକ୍ଲୋସ୍ପୋରିନ୍ ଏକ ଅମୋଘ ଔଷଧ । ସାଧାରଣତଃ ଅଙ୍ଗରୋପଣ ପରେ ରୋପିତ ଅଙ୍ଗକୁ ଶରୀର ଉପେକ୍ଷା କରେ ଏବଂ ବିଭିନ୍ନ ଜୀବାଣୁଦ୍ୱାରା ସଂକ୍ରମିତ ହେଲେ ତାହାକୁ ରକ୍ଷା କରିପାରେ ନାହିଁ, କିନ୍ତୁ ସାଇକ୍ଲୋସ୍ପୋରିନ୍ ଏଭଳି ଏକ ଔଷଧ ଯାହା ଶରୀର ଉପେକ୍ଷା କରୁଥିବା କୋଷଗୁଡ଼ିକ ଉପରେ କୌଣସି ପ୍ରଭାବ ପକାଏ ନାହିଁ । ତେଣୁ ବର୍ତ୍ତମାନ ବୃକ୍କ, ଯକୃତ, ଫୁସ୍‌ଫୁସ, ଅଗ୍ନାଶୟ, ମେରୁମଜ୍ଜା, ଅସ୍ଥି, ହୃତ୍‌ପିଣ୍ଡ ରୋପଣ ଭଳି ଜୀବନ ରକ୍ଷାକାରୀ ଅସ୍ତ୍ରୋପଚାରରେ ଏକ ଅନନ୍ୟ ସମ୍ଭାର । ବସନ୍ତର ମଳୟ ପରି ନୂତନ ପୁଷ୍ପର ମୁଞ୍ଜରୀ ଭଳି ଏକ ସମ୍ପୂର୍ଣ୍ଣ ନୂତନ ଚେତନା ।

୧୯୭୮ ମସିହାରେ ପ୍ରଥମେ ସାଇକ୍ଲୋସ୍ପୋରିନ୍ ଅଙ୍ଗରୋପଣ ଅସ୍ତ୍ରୋପଚାରରେ ବ୍ୟବହୃତ ହେଲା । ଏହି ଔଷଧ ବ୍ୟବହାର ପୂର୍ବରୁ

ବୃକ୍କ ରୋପଣରେ ବର୍ଷକ ମଧ୍ୟରେ ଶତକଡ଼ାରେ ପଚାଶ ମରିଯାଉଥିଲେ, କିନ୍ତୁ ଏବେ ଶତକଡ଼ାରେ ପଞ୍ଚାଅଶୀ ବଞ୍ଚିପାରୁଛନ୍ତି । ସାଇକ୍ଲୋସ୍ପୋରିନ ପୂର୍ବରୁ ଯକୃତ ରୋପଣ ଅସ୍ତ୍ରୋପଚାରରେ ଶତକଡ଼ାରେ ସତୁରି ବର୍ଷକ ମଧ୍ୟରେ ମରି ଯାଉଥିଲେ, କିନ୍ତୁ ଏବେ ଶତକଡ଼ାରେ ସତୁରି ବଞ୍ଚି ପାରୁଛନ୍ତି । ସେହିଭଳି ଶତକଡ଼ାରେ ଅଶୀ ବର୍ତ୍ତମାନ ହୃତ୍‌ପିଣ୍ଡ ରୋପଣ ଓ ମେରୁମଜ୍ଜା ରୋପଣରେ ବଞ୍ଚି ପାରୁଛନ୍ତି ।

ଏଭଳି ଏକ ଔଷଧ ପ୍ରକୃତିର ଅମୂଲ୍ୟ ଅବଦାନ । ୧୯୨୮ ମସିହାରେ ପେନସିଲିନ ଛତୁରୁ ବାହାରିଲା ପରଠାରୁ ବଡ଼ ବଡ଼ ଔଷଧ କମ୍ପାନୀମାନେ ମାଟି, ଗଛର ଛେଲି, ବିଭିନ୍ନ ପ୍ରକାର ପ୍ରାକୃତିକ ଶ୍ରେଷ୍ଟ ବଡ଼ ଗଛ ଓ ଛତୁ ବିଭିନ୍ନ ସମ୍ପର୍କରେ ପରୀକ୍ଷା କରି ଆସୁଛନ୍ତି । ସେହିଭଳି ଏକ ଔଷଧ କମ୍ପାନୀ ହେଲା ସ୍ୱିଜରଲଣ୍ଡର 'ସାଣ୍ଡୋଜ୍' । ଏହି କମ୍ପାନୀର ସବୁ କର୍ମଚାରୀଙ୍କୁ ନିର୍ଦ୍ଦେଶ ଦିଆଯାଇଛି ଯେ ସେମାନେ ବିଭିନ୍ନ ଦେଶରେ ଛୁଟି କଟାଉଥିବାବେଳେ ସେଠିକାର କିଛି ମାଟି, ନ ହେଲେ ପଥରକୁ କୋରି ତା ଉପର ଶିଉଳି କିମ୍ବା ଗଛରୁ ଶିଉଳି ଛଡ଼ାଇ କିଛି କିଛି ଆଣିବେ । ଏହି ଚେଷ୍ଟା ୧୯୬୯ ମସିହାରେ ଫଳପ୍ରସୂ ହେଲା ।

ସାଣ୍ଡୋଜ କମ୍ପାନୀ ଜୀବାଣୁ ତତ୍ତ୍ୱ ବିଭାଗରେ ଏହିଭଳି ପଦାର୍ଥରେ ହଜାର ହଜାର ପଲିଥିନ୍ ବ୍ୟାଗ ଅଛି । କିନ୍ତୁ ଜଣେ ଲାବରେଟୋରୀ ଟେକ୍‌ନିସିଆନ ନରୱେରେ ଛୁଟି କଟାଇଲାବେଳେ ସେଠାରୁ ଯେଉଁ ଛତୁର ନମୁନା ଆଣିଥିଲେ ତାହା ପରୀକ୍ଷା ପରେ ଯେଉଁ ଫଳ ବାହାରିଲା ତାହା ସମସ୍ତଙ୍କୁ ଆଚମ୍ବିତ କରିଦେଲା ।

ସେହି ଛତୁଟି ଥିଲା ଟଲିପୋକ୍ଲାଡିଅମ ଇନ୍‌ଫ୍ଲାଟମ୍ ଶ୍ରେଣୀର (Tolypocladium inflatum) । ଏହି ଛତୁର ଦ୍ରବ୍ୟ ଗୁଣ ପ୍ରଥମ ଅବସ୍ଥାରେ ସେଭଳି ଅସାଧାରଣ ଜଣାପଡ଼ି ନ ଥିଲା । ଏହା କେବଳ କେତେକ ଛତୁଜାତୀୟ ରୋଗକୁ ଆୟତ୍ତ କରିପାରୁଥିଲା, କିନ୍ତୁ ଏହାର ରସାୟନିକ ପ୍ରକୃତି ଅସାଧାରଣ ଥିଲା ।

ଏହି ପଦାର୍ଥର ରସାୟନିକ ନାମକରଣ ହେଲା କମ୍ପାଉଣ୍ଡ ନମ୍ବର ୨୪-୫୫୬ ଏବଂ ପରବର୍ତ୍ତୀ କାଳରେ ସମୁଚିତ ପରୀକ୍ଷା କରିବା ପାଇଁ ଏହି ଛତୁର ବହୁଳ ଚାଷ କରାଗଲା ।

୧୯୭୧ ମସିହାରେ ଏହି ଛତ୍ରୁ ଉପରେ ବିଶ୍ଳେଷଣର ଗବେଷଣା ଆରମ୍ଭ ହେଲା । ଜୀବାଣୁତତ୍ତ୍ୱ ବିଭାଗର ମୁଖ୍ୟ ଅଧ୍ୟାପକ ଜନ୍ ଫ୍ରାଙ୍କ ବୋରେଲ ଏହି ଗବେଷଣାର ପୁରୋଧା ହେଲେ ।

ସେ ଭାବିଲେ ଏହି ଛତ୍ରୁର ତ ଆଣ୍ଟିବାୟୋଟିକ୍ ଦ୍ରବ୍ୟ ଗୁଣ ନାହିଁ । ସେତେବେଳେ ସେ କର୍କଟ ରୋଗ ବିରୋଧୀ, ଅଙ୍ଗରୋପଣ ସହାୟକ କେତେକ ଔଷଧ ଉପରେ ଗବେଷଣା କରୁଥିଲେ । ସେ ଏହି କମ୍ପାଉଣ୍ଡକୁ ସେଥିରେ ପରୀକ୍ଷା କରିବାକୁ ଅକସ୍ମାତ୍ ମନସ୍ଥ କଲେ । କି ଆଶ୍ଚର୍ଯ୍ୟ ଫଳ ! କର୍କଟ ରୋଗଗ୍ରସ୍ତ ମୂଷାମାନଙ୍କ ଦେହରେ ଏହି ଔଷଧ ଦେଲାପରେ ଦେଖାଗଲା ଯେ ସେମାନଙ୍କର ରୋଗ ପ୍ରତିରୋଧକ ଶକ୍ତି ବହୁ ପରିମାଣରେ କମିଯାଉଛି କିନ୍ତୁ କାନସର କୋଷ ବୃଦ୍ଧି ରୋକିବାରେ ଔଷଧର କୌଣସି ଫଳ ନାହିଁ । ଏଭଳି ଗବେଷଣାର ଫଳ ତାଙ୍କ ବୈଜ୍ଞାନିକ ଜୀବନରେ ଆଗରୁ ଅନୁଭୂତ ହୋଇ ନ ଥିଲା । ତାଙ୍କର ଏ ସମ୍ବନ୍ଧୀୟ ଲିଖିତ ସନ୍ଦର୍ଭ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ 'ଇମ୍ୟୁନୋଲଜି' ବିଭାଗରେ ପାଠ କଲେ ଏବଂ ପ୍ରାଣୀ ଅଙ୍ଗ ପରିରୋପଣ ବିଭାଗରେ ବ୍ୟବହାର କରିବାପାଇଁ କିଛି ଔଷଧ ମଧ୍ୟ ଦାନ କଲେ । ଏହି ଔଷଧର ନାମ ରଖାଗଲା ସାଇକ୍ଲୋସ୍ପୋରିନ-ଏ ।

ସାଧାରଣ ଇମ୍ୟୁନିଟି ବିରୋଧୀ ଔଷଧ ବ୍ୟବହୃତ ହେଉଥିଲା ବେଳେ ମୂଷାମାନଙ୍କର ହୃତ୍‌ପିଣ୍ଡରୋପଣ ଅସ୍ତ୍ରୋପଚାର ପରେ ସେମାନେ ମାତ୍ର ଦୁଇ ଦିନ ବଞ୍ଚୁଥିଲେ । କିନ୍ତୁ ସାଇକ୍ଲୋସ୍ପୋରିନ୍ ବ୍ୟବହୃତ ହେବା-ପରେ ହୃତ୍‌ପିଣ୍ଡ ବଦଳ ପରେ ସେମାନେ ସାତ ଦିନରୁ ଊର୍ଦ୍ଧ୍ୱ କାଳ ବଞ୍ଚିପାରିଲେ ।

ତାହାପରେ ପ୍ରଶ୍ନ ଉଠିଲା, ଏହି ଔଷଧ ମଣିଷ ଦେହରେ ବ୍ୟବହୃତ ହେବ କିପରି ?

ବୋରେଲ ଭାବିଲେ ଏହି ଔଷଧ ତ ଜଳରେ ଦ୍ରବୀଭୂତ ହୁଏନାହିଁ । ଏହା କାପ୍‌ସୁଲ ଭିତରେ ଦେଲେ ଏହା ତ ଝାଡ଼ାରେ ବାହାରିଯିବ, ତେବେ ଏହା ବ୍ୟବହୃତ ହେବ କିପରି ? ସେମାନେ ଆଗରୁ ଜାଣିଥିଲେ ଏହା ଶତକଡ଼ା ୯୫ ଭାଗ ଇଥାଇଲ ଆଲକହଲରେ ଦ୍ରବୀଭୂତ ହୁଏ । ବୋରେଲ ଆଲକହଲ ସହିତ ଏହି ଔଷଧର ଚୂର୍ଣ୍ଣ ମଧ୍ୟ

ଖାଇଲେ । ତାଙ୍କ ଶରୀରରେ ମଦ୍ୟର ପ୍ରଭାବ ତ ରହିଲା କିନ୍ତୁ ତାଙ୍କ ରକ୍ତରେ ସାଇକ୍ଲୋସ୍ପୋରିନ୍ ଥିବାର ପ୍ରମାଣ ପରୀକ୍ଷାରୁ ଜଣାପଡ଼ିଲା ।

୧୯୭୮ ମସିହାରେ ଏକ ଭୁଲ ରକ୍ତ ସଞ୍ଚାରଣ ପରେ ଏକ ବୃକକ୍ ପରିରୋପଣ ବ୍ୟକ୍ତିଙ୍କ ଅବସ୍ଥା ବହୁତ ଖରାପ ହୋଇଗଲା । ଅଧ୍ୟାପକ ରୟ୍ କାଲନେ କେମ୍ବ୍ରିଜ ମେଡ଼ିକାଲ କଲେଜରେ ଦ୍ୱିତୀୟ ବୃକକ୍ ପରିରୋପଣ ପାଇଁ ଏହି ଲୋକଙ୍କୁ ସାଇକ୍ଲୋସ୍ପୋରିନ ଦ୍ୱାରା ଚିକିତ୍ସା କଲେ । ସେ ଭାବିଲେ ଯଦି ବୃକକ୍ ପରିରୋପଣ ଖରାପ ହୋଇଯାଏ ତେବେ 'ଡାୟାଲିସିସ୍' ଦ୍ୱାରା ତାଙ୍କୁ ବଞ୍ଚାଇ ଦେବ । ତେଣୁ ସାଇକ୍ଲୋସ୍ପୋରିନ୍ ବ୍ୟବହାର କରିପିବା ପାଇଁ ଏହା ପ୍ରକୃଷ୍ଟ କ୍ଷେତ୍ର ।

ପ୍ରକୃତରେ ଏହି ଔଷଧ ବ୍ୟବହାର କରାଗଲା ପରେ କୌଣସି ଅସୁବିଧା ହେଲ ନାହିଁ । ସାଧାରଣତଃ ଯେଉଁଭଳି ନୂତନ ଅଙ୍ଗକୁ ଶରୀର ପରିତ୍ୟାଗ ବା ରିଜେକ୍‌ସନ୍ କରେ ତାହା ଏଠାରେ ଦେଖାଗଲା ନାହିଁ ଏବଂ ଆଉ କୌଣସି ଇମ୍ୟୁନିଟି ବିରୋଧୀ ଔଷଧ ଦେବା ଦରକାର ହେଲା ନାହିଁ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଲୋକଟି କାର୍ଯ୍ୟକ୍ଷମ ହୋଇ ପାରିଲେ ।

କାଲନେଙ୍କର ଏହି 'ସାଇକ୍ଲୋସ୍ପୋରିନ୍' ବ୍ୟବହାର ସାରା ପୃଥିବୀରେ ଚହଳ ପକାଇଦେଲା ଏବଂ ସାଣ୍ଡୋଜ୍ କମ୍ପାନୀ ୟୁରୋପର ଆଠଟି କେନ୍ଦ୍ରରେ ଏହି ଔଷଧ ଅଙ୍ଗ ପରିରୋପଣରେ ବ୍ୟବହୃତ ହେବା ପାଇଁ ଦାନ କଲେ । ଏହାର ଫଳ ଆଶାତୀତ ଭାବରେ ସଫଳ ହେଲା ଏବଂ ୧୯୭୮ ମସିହା ଠାରୁ ଏ ପର୍ଯ୍ୟନ୍ତ ଯେଉଁମାନେ ଏହି ଔଷଧ ଖାଉଛନ୍ତି ସେମାନଙ୍କର ବଦଳା ହୋଇଥିବା ଅଙ୍ଗ ସୁସ୍ଥ ରହିଛି ଏବଂ ସେମାନଙ୍କ ଶରୀର ତାହାକୁ 'ରିଜେକସନ' ବା ଉପେକ୍ଷା କରିନାହିଁ ।

ଅଙ୍ଗ ବଦଳ ଅସ୍ତ୍ରୋପଚାରର ବର୍ତ୍ତମାନ ହୃତ୍‌ପିଣ୍ଡ, ଫୁସ୍‌ଫୁସ୍, ଯକୃତ, ବୃକକ୍ ଆଦି ବହୁ ଅଙ୍ଗ ପାଇଁ କରାଯାଇ ପାରୁଛି ।

'ସାଇକ୍ଲୋସ୍ପୋରିନ' ବୋଧହୁଏ 'ଜରା ଓ ମୃତ୍ୟୁ'ରୁ ରକ୍ଷା ପାଇବା ପାଇଁ ପ୍ରଥମ ମହୌଷଧି । ପ୍ରାକୃତିକ ଉଦ୍ଭିଦ ବିଜ୍ଞାନରମ୍ଭ ଭିତରେ 'ଅଜର ଅମର ବର' ମିଳିବା ବର୍ତ୍ତମାନ ଆଉ ଅସମ୍ଭବ ମନେ ହେଉ ନାହିଁ ।



# ଡକ୍ଟର ନିରଞ୍ଜନ ତ୍ରିପାଠୀ



ଜନ୍ମ : ଫେବୃୟାରୀ ୨୨ ତାରିଖ ୧୯୪୨ ମସିହାରେ । ରେଭେନ୍ସା କଲେଜ ଓ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଉଚ୍ଚ ଶିକ୍ଷା ପ୍ରାପ୍ତ । ୧୯୬୫ରେ ଏମ୍.ବି.ବି.ଏସ୍. ଏବଂ ୧୯୭୨ରେ ଭେଷଜ ବିଜ୍ଞାନରେ ଉପାଧ୍ୟୋତ୍ତର ଡିଗ୍ରୀ (ଏମ୍.ଡି.) ଲାଭ । ୧୯୭୫ ଓ ୧୯୮୨ରେ ଯଥାକ୍ରମେ ଯୁକ୍ତରାଷ୍ଟ୍ର ଆମେରିକାର ଇଣ୍ଟର ନାସନାଲ୍ କଲେଜ ଅଫ୍ ଆଞ୍ଜିଓଲଜି ଓ ଇଣ୍ଟରନାସନାଲ୍ କଲେଜ ଅଫ୍ ଚେଷ୍ଟ ଫିଜିସିଆନ୍ସର ଫେଲୋ (ରତ୍ନ ସଦସ୍ୟ) ମନୋନୀତ । ୧୯୭୭ରେ ବମ୍ବେଠାରେ ଅନୁଷ୍ଠିତ ଆନ୍ତର୍ଜାତୀୟ ଉଚ୍ଚରକ୍ତଚାପରୋଗ ସମ୍ବନ୍ଧୀୟ ବିଶେଷଜ୍ଞ ସମ୍ମିଳନୀର ଉପଦେଷ୍ଟା ମଣ୍ଡଳୀର ସଭ୍ୟ । ୧୯୮୩ରେ ଚେକୋସ୍ଲୋଭାକିଆର ପ୍ରାଗ୍‌ଠାରେ ଅନୁଷ୍ଠିତ ବିଶ୍ୱଶାନ୍ତି ସମ୍ମିଳନୀରେ ଭାରତୀୟ ଦଳର ସଭ୍ୟ ରୂପେ ଯୋଗଦାନ । ବିଭିନ୍ନ ସମୟରେ ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, ସୋଭିଏତ ୟୁନିଅନ୍, ଫ୍ରାନ୍ସ, ପୋଲାଣ୍ଡ ପ୍ରଭୃତି ଦେଶ ଭ୍ରମଣ କରି ବିଭିନ୍ନ ସ୍ୱାସ୍ଥ୍ୟ ଶିକ୍ଷା ଅନୁଷ୍ଠାନରୁ ପ୍ରତ୍ୟକ୍ଷ ଅନୁଭୂତି ଲାଭ ।

ଆସୋସିଏସନ୍ ଅଫ୍ ଫିଜିସିଆନ୍ସ ଅଫ୍ ଇଣ୍ଡିଆ, କାର୍ଡିଓଲଜିକାଲ୍ ସୋସାଇଟି ଅଫ୍ ଇଣ୍ଡିଆ ଆଦି ଦଶଟି ସର୍ବଭାରତୀୟ ଚିକିତ୍ସା ବିଜ୍ଞାନ ଅନୁଷ୍ଠାନର ଆଜୀବନ ସଭ୍ୟ ଓ କର୍ମକର୍ତ୍ତା । ରୋଟାରୀ କ୍ଲବ, ଉତ୍କଳ ସାହିତ୍ୟ ସମାଜ, ବିଜ୍ଞାନ ପ୍ରଚାର ସମିତି ଆଦି ଓଡ଼ିଶାର ବିଭିନ୍ନ ସ୍ୱେଚ୍ଛା-ସେବୀ ତଥା ସାଂସ୍କୃତିକ ଅନୁଷ୍ଠାନର ସକ୍ରିୟ ସଭ୍ୟ ଓ କର୍ମକର୍ତ୍ତା ।

୧୯୬୬ରୁ ସ୍ୱାସ୍ଥ୍ୟ ବିଭାଗରେ ନିଯୁକ୍ତି ଓ ୧୯୬୩ରୁ ୧୯୮୦ ଯାଏ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜର ହୃଦ୍ ବିଜ୍ଞାନ, ଭେଷଜ ବିଜ୍ଞାନ ତଥା ଉଦର ରୋଗ ବିଜ୍ଞାନ ବିଭାଗରେ ଅଧ୍ୟାପନା । ୧୯୮୦ ଅଗଷ୍ଟ ୧୫ ତାରିଖରେ ସରକାରୀ ଚାକିରୀରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ । ଅଧୁନା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିସିନ୍, କଟକର ନିର୍ଦ୍ଦେଶକ ।